# AN EASY

# History of England

## (For Classes VIII and IX)

BY

**Siva Prosad Das, M. Ed.,**

*Head Master, E. T. School,*

**Bargarh (Sambalpur).**

*First Impression—1939.*

## ସରଳ

# ଇଂଲଣ୍ଡ ଇତିହାସ

## ( ଅଷ୍ଟମ ଓ ନବମ ଶ୍ରେଣୀ ନିମନ୍ତେ )

ଲେଖକ—**ଶ୍ରୀ ଶିବପ୍ରସାଦ ଦାଶ, ଏମ୍. ଏଡ୍.**

ହେଡ଼ମାଷ୍ଟର, ଟ୍ରେନିଂ ସ୍କୁଲ,

ବରଗଡ଼, ସମ୍ବଲପୁର ।

ce—Re 0-14-0 ମୂଲ୍ୟ ୧ [illegible]

# ସୂଚୀପତ୍ର

# ସରଳ ଇଂଲଣ୍ଡ ଇତିହାସ

( ୧ )

## ବ୍ରିଟିଶ୍ ଦ୍ୱୀପପୁଞ୍ଜ ଓ ଗ୍ରେଟ୍ ବ୍ରିଟେନ୍

ଆଟଲାଣ୍ଟିକ ମହାସାଗର ମଧ୍ୟରେ ୟୁରୋପ ମହାଦେଶର ଉତ୍ତର-ପଶ୍ଚିମକୁ ତୁମ୍ଭେମାନେ କେତେଗୁଡ଼ାଏ ସାନ ସାନ ଦ୍ୱୀପ ମାନଚିତ୍ରରେ ଦେଖିବ । ଏହି ସବୁ ଦ୍ୱୀପକୁ "ବ୍ରିଟିଶ୍ ଦ୍ୱୀପପୁଞ୍ଜ" କହନ୍ତି । ଏଥିରେ ଇଂଲଣ୍ଡ, ୱେଲ୍ସ, ସ୍କଟଲଣ୍ଡ ଓ ଆୟର୍ଲଣ୍ଡ ନାମରେ ଚାରିଗୋଟି ଦେଶ ଅଛି ଏବଂ ତାହାଁ ସଙ୍ଗେ ଆହୁରି କେତୋଟି ଛୋଟ ଛୋଟ ଦ୍ୱୀପ ମଧ୍ୟ ଅଛି । ଆୟର୍ଲଣ୍ଡ ଗୋଟିଏ ପୃଥକ୍ ଦ୍ୱୀପ । ତାକୁ ଛାଡ଼ି ତାଠାରୁ ବଡ଼ ଆଉ ଗୋଟିଏ ଦ୍ୱୀପ ଅଛି । ଏହି ବଡ଼ ଦ୍ୱୀପରେ ଇଂଲଣ୍ଡ, ୱେଲ୍ସ ଓ ସ୍କଟଲଣ୍ଡ ଅଛି । ଏହି ବଡ଼ ଦ୍ୱୀପ ବା ସେହି ତିନି ଦେଶକୁ "ଗ୍ରେଟ୍-ବ୍ରିଟେନ୍" କହନ୍ତି । ତୁମ୍ଭମାନଙ୍କର ଏହି ଇତିହାସରେ ଇଂଲଣ୍ଡ ଦେଶର ଇତିହାସ ବିଶେଷରୂପେ ବର୍ଣ୍ଣିତ, କିନ୍ତୁ ତାହା ସଙ୍ଗରେ ୱେଲ୍ସ, ସ୍କଟଲଣ୍ଡ ଓ ଆୟର୍ଲଣ୍ଡର ଇତିହାସ ମଧ୍ୟ କୁହାଯିବ । ମାତ୍ର ଇଂରେଜ ଜାତି ବା ଇଂଲଣ୍ଡର ଲୋକେ ସେଥିରେ ମୁଖ୍ୟ କାର୍ଯ୍ୟ କରିଥିବାରୁ ଏହି ଇତିହାସକୁ "ଇଂଲଣ୍ଡ ଇତିହାସ" କହାଯାଇଅଛି । ଇଂଲଣ୍ଡ, ୱେଲ୍ସ ଓ ସ୍କଟଲଣ୍ଡର ଲୋକମାନଙ୍କୁ ମିଶାଇ "ବ୍ରିଟିଶ୍ ଜାତି" କହନ୍ତି । ପ୍ରକୃତ କଥା କହିବାକୁ ଗଲେ, ତୁମ୍ଭେମାନେ ବ୍ରିଟିଶ୍ ଜାତିର ଇତିହାସ ବା ଗ୍ରେଟ୍-ବ୍ରିଟେନର ଇତିହାସ ପଢ଼ିବ ।

( ୨ )

## ପୁରାତନ ବ୍ରିଟେନ୍

ଆଜକୁ ଦୁଇ ହଜାର ବର୍ଷରୁ କିଛି ଅଧିକ କାଳ ଆଗେ ଗ୍ରେଟ୍ ବ୍ରିଟେନ୍ ଜଙ୍ଗଲରେ ପୂର୍ଣ୍ଣ ଥିଲା । ସେତେବେଳେ ସେଠାରେ ଗ୍ରାମ ନଗର କିଛି ନ ଥିଲା । ଲୋକେ ଚାଷ କରୁ ନ ଥିଲେ କିମ୍ବା ରୋପେଇ କରି ଖାଉ ନ ଥିଲେ । ସେମାନେ କୌଣସି ବାସନ ପ୍ରସ୍ତୁତ କରି ଜାଣୁ ନ ଥିଲେ । ମାଟିର ବାସନ ବି ନ ଥିଲା । ଧାତୁରେ ବା ଅନ୍ୟ କିଛିର ଚୋଟ ଦେଇ ଭାଙ୍ଗି ପ୍ରସ୍ତୁତ କିଛି ପ୍ରସ୍ତୁତ ହେଉ ନ ଥିଲା । ସେକାଳରେ ସେଠାରେ ଯେଉଁ ଲୋକମାନେ ବାସ କରୁଥିଲେ, ସେମାନେ ଗୃହ ତିଆରି କରୁ ନ ଥିଲେ । ପର୍ବତ ପାହାଡ଼ରେ ଥିବା ଗୁମ୍ଫାମାନଙ୍କରେ ସେମାନେ ରହୁଥିଲେ । ଜଙ୍ଗଲର ପଶୁ ପକ୍ଷୀ ଶିକାର କରୁଥିଲେ । ସେମାନଙ୍କର କଞ୍ଚା ମାଂସ ଖାଉ-



ପ୍ରସ୍ତରଯୁଗର ଅସ୍ତ୍ର ଶସ୍ତ୍ର

ଥିଲେ ଏବଂ ଚର୍ମରେ ଦେହ ଘୋଡ଼ାଇ ହେଉଥିଲେ । ସେମାନେ ଯାହା କିଛି ଅସ୍ତ୍ର ଶସ୍ତ୍ର ବା ବାସନ ବ୍ୟବହାର କରୁଥିଲେ, ସେ ସବୁ

କେବଳ ସ୍ଥୂଳ ପଥରରେ ତିଆର ହେଉଥିଲା । ଏଗୁଡ଼ିକ ଅତି କଦର୍ଯ୍ୟ ଦିଶୁଥିଲା । କାହିଁ କାହିଁ ଏମାନେ ପର୍ବତ ପାହାଡ଼ ଦେହରେ, ପଥରରେ ଓ ପ୍ରାଣୀମାନଙ୍କ ହାଡ଼ରେ କେତେକ ଚିତ୍ର ଅଙ୍କୁଥିଲେ ।



ହାଡ଼ରେ ଖୋଦିତ ଚିତ୍ର

ଏମାନେ କେତେ ଦିନରୁ ଗ୍ରେଟ୍-ବ୍ରିଟେନରେ ଥିଲେ ବା କେଉଁଠାରୁ ସେଠାକୁ ଆସିଥିଲେ, ତାହା ଜାଣି ହେଉ ନାହିଁ । ଆଜକାଲି ସେମାନେ ସେଠାରେ ନାହାନ୍ତି, କେଉଁଠାକୁ ଗଲେ ତାହା ମଧ୍ୟ କହି ହେଉ ନାହିଁ । ଲୋକେ କହନ୍ତି, ସେମାନେ ଏସ୍କିମୋ ଜାତିର ଲୋକ ଥିଲେ । ଯାହାହେଉ, ସେମାନଙ୍କୁ ଗ୍ରେଟ୍-ବ୍ରିଟେନର ଆଦିମ ଅଧିବାସୀ କହାଯାଏ ।

ଏହି ଗୁହାବାସୀ ଆଦିମମାନଙ୍କ ଉତ୍ତାରୁ ବ୍ରିଟେନକୁ ଏକ ଖର୍ବ ଓ କୃଷ୍ଣକାୟ ଜାତି ଆସି ସେଠାରେ ବାସ କଲେ । ଲୋକେ କହନ୍ତି, ଏମାନେ ଆଫ୍ରିକାରୁ ସ୍ପେନ୍ ବାଟେ ବ୍ରିଟେନକୁ ଆସିଥିଲେ । ସେମାନେ ପଥରରେ କୁଠାର, ଶର, ବଲ୍ଲମ, କ୍ଷୁର ପ୍ରଭୃତି ଅସ୍ତ୍ରଶସ୍ତ୍ର ତିଆରି କରୁଥିଲେ । ବଡ଼ ବଡ଼ ପଥରମାନ ଗୋଟିକ ଉପରେ

ଗୋଟିଏ ସଜାଡ଼ି ରଖି ଏମାନେ ରହିବାପାଇଁ ଘର ତିଆରି କରୁଥିଲେ । ସେହି ପ୍ରକାର ଘର ଭିତରେ ଶବ ମଧ୍ୟ ପୋତୁଥିଲେ । ସଲ୍‌ସ୍‌ବେରି ନାମକ ପଡ଼ିଆରେ ଏମାନଙ୍କର ପ୍ରସ୍ତୁତ କେତେକ ବଡ଼ ପଥର



ଷ୍ଟୋନ୍ ହେଞ୍ଜ୍

ଠାଣ ମିଳୁଅଛି । ତାହାକୁ ଷ୍ଟୋନ୍ ହେଞ୍ଜ୍ ବା ପ୍ରସ୍ତରବୃତ୍ତ କହନ୍ତି । ଏହା ଉପରେ ବସି ସେମାନେ ସଭା କରୁଥିଲେ ଏବଂ ଆକାଶର ତାରାମାନଙ୍କର ଗତି ନିରୀକ୍ଷଣ କରୁଥିଲେ ।

ଏହି ଖର୍ବ, କୃଷ୍ଣକାୟ ଜାତି ମେଷ ପ୍ରଭୃତି ଗୃହପାଳିତ ପଶୁମାନଙ୍କୁ ପାଳୁଥିଲେ, ଜମି ଚଷୁଥିଲେ, ସୂତାକାଟି ଲୁଗା ବୁଣୁଥିଲେ ଏବଂ ମାଟିର ହାଣ୍ଡି ଗଢ଼ୁଥିଲେ ।

**କେଲ୍ଟ ଜାତ**—ଅନେକ ବର୍ଷ ପରେ ଫ୍ରାନ୍ସରୁ କେଲ୍ଟ୍‌ମାନେ ବ୍ରିଟେନକୁ ଆସିଲେ । ଏମାନେ ନିଜକୁ ବ୍ରିଟନ୍ ଏବଂ ନିଜ ଦେଶକୁ ବ୍ରିଟେନ୍ ନାମରେ ପରିଚିତ କରାଇଲେ । ଏମାନେ ଅପେକ୍ଷାକୃତ ସଭ୍ୟ ଥିଲେ ଏବଂ ଦେଖିବାକୁ ଭଲ, ବଳିଷ୍ଠ ଓ ଶ୍ୱେତକାୟ ଥିଲେ । ସେମାନଙ୍କର ମୁଣ୍ଡର ବାଳ ସୁନ୍ଦର ଓ ଚକ୍ଷୁର ରଙ୍ଗ ନୀଳ ଥିଲା ।

ସେମାନେ ଦଳ ଦଳ ହୋଇ ଏକାଠି ଗ୍ରାମମାନଙ୍କରେ ରହୁଥିଲେ । ସେହି ଗ୍ରାମଗୁଡ଼ିକ ସାନ ବଡ଼ ଥିଲା ଏବଂ ତହିଁର ଘରଗୁଡ଼ିକ କାଠରେ ତିଆରି ହେଉଥିଲା । ଘରର ଛାତକୁ ଘନ କରି ଗଛର ପତ୍ରମାନ ଛାଇ ଦେଉଥିଲେ । ଗାଆଁର ଚାରିପଟେ ଖାଇ ଖୋଳି ଖାଇ ନିକଟରେ କଡ଼କାଠ ପୋତି ଦେଉଥିଲେ; କିମ୍ବା ବାଉଁଶ ପରି କଣ୍ଟାଗଛ ଲଗାଇ ଦେଉଥିଲେ, ଯେପରି ଶତ୍ରୁମାନେ ସହଜରେ ଗ୍ରାମ ଭିତରେ ପଶି ଆକ୍ରମଣ କରି ପାରିବେ ନାହିଁ । ପ୍ରତି ଦଳରେ ଜଣେ ଜଣେ ସର୍ଦ୍ଦାର ଥିଲେ । ବିଭିନ୍ନ ଦଳର ସର୍ଦ୍ଦାରମାନେ ପରସ୍ପର ଭିତରେ ଯୁଦ୍ଧ କରୁଥିଲେ, କିନ୍ତୁ ବାହାରରୁ କେହି ଶତ୍ରୁ ଆସିଲେ ସମସ୍ତେ ମିଶି ତା ସଙ୍ଗରେ ଲଢ଼ୁଥିଲେ ।



କେଲ୍ଟ୍ ହାଣ୍ଡି

ଗୋରୁ, ମେଣ୍ଢା ପାଳନ କରିବା, ଜମି ଚାଷ କରିବା, ମୃଗୟା କରିବା ଏମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଗଛର ଗଣ୍ଡିକୁ ଖୋଳି ଏମାନେ ଡଙ୍ଗା ତିଆରି କରୁଥିଲେ । ଭିନିସ୍ ଦେଶର ଲୋକେ ଏମାନଙ୍କ ପାଖରୁ ଟିଣ, ସୀସା, ଲୁହା, ସୁନା, ଚମଡ଼ା ଏବଂ ଶସ୍ୟ ପ୍ରଭୃତି ନେଇ ଭୂମଧ୍ୟସାଗରର ଉପକୂଳରେ ବିକ୍ରୟ କରୁଥିଲେ ।

ବ୍ରିଟେନ୍‌ମାନେ ପୁରୋହିତଙ୍କ ଦ୍ୱାରା ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ପ୍ରକୃତିର ପୂଜା କରୁଥିଲେ । ସେହି ପୁରୋହିତମାନଙ୍କୁ ଡ୍ରୁଇଡ୍ କହୁଥିଲେ । ଡ୍ରୁଇଡ୍‌ମାନେ ସେମାନଙ୍କ ଜାତିର ସଙ୍ଗୀତ ରଚନା କରୁଥିଲେ, ସେମାନଙ୍କର ଶିକ୍ଷକ ଓ ବିଚାରପତିର କାର୍ଯ୍ୟ ମଧ୍ୟ କରୁଥିଲେ ।

---

( ୩ )

## ରୋମକ ରାଜତ୍ୱ

ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ରୋମସାମ୍ରାଜ୍ୟ ବିଶେଷ ଉନ୍ନତି ଲାଭ କରିଥିଲା । ରୋମକମାନେ ଫ୍ରାନ୍‌ସ, ଜର୍ମାନୀ ପର୍ଯ୍ୟନ୍ତ ଦେଶ ଜୟ କରିଥିଲେ । ସେତେବେଳେ ଫ୍ରାନ୍‌ସକୁ ଗଲ୍ ଦେଶ ଏବଂ ତହିଁର ଅଧିବାସୀମାନଙ୍କୁ ଗଲ୍ କହୁଥିଲେ । ଗଲ୍‌ମାନେ ଓ ବ୍ରିଟେନ୍‌ମାନେ ଏକ ଜାତିର ଲୋକ ଥିଲେ । ଯେତେବେଳେ ରୋମକ ସେନାପତି ଜୁଲିୟସ୍ ସିଜର୍ ଗଲ୍‌ମାନଙ୍କ ସଙ୍ଗେ ଯୁଦ୍ଧ କଲେ, ବ୍ରିଟେନ-ବାସୀ ବ୍ରିଟେନ୍‌ମାନେ ସିଜରଙ୍କ ବିରୁଦ୍ଧରେ ଗଲ୍‌ମାନଙ୍କୁ ସାହାଯ୍ୟ କଲେ । ଏଥିଲାଗି ବ୍ରିଟେନ୍‌ମାନଙ୍କୁ ଉଚିତ ଶାସ୍ତି ଦେବାକୁ ସିଜର୍ ବ୍ରିଟେନ୍ ଆକ୍ରମଣ କଲେ । ଏହା ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ୫୫ ବର୍ଷ ପୂର୍ବର କଥା; ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୫୫ ଅବ୍ଦର କଥା ।



ସେନାପତି ଜୁଲିୟସ୍ ସିଜର

ସିଜର ବ୍ରିଟେନ୍‌କୁ ଯାଇ ଦେଖିଲେ, ବ୍ରିଟେନ୍‌ମାନେ ଭାରି ସାହସୀ ଓ ସୁଯୋଦ୍ଧା ଥିଲେ । ସେମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ



୬

ରୋମୀୟ ସେନାର ନଦୀତରଣ

ହେଲେ, ଅଧିକ ସୈନ୍ୟ, ଅଧିକ ଅସ୍ତ୍ରଶସ୍ତ୍ର ଦରକାର । ସେଥି ସକାଶେ ସେ ରୋମକୁ ଫେରିଗଲେ ଏବଂ ତହିଁ ଆରବର୍ଷ ଭଲରୂପେ ପ୍ରସ୍ତୁତ ହୋଇ ପୁଣି ବ୍ରିଟେନ୍‌କୁ ଆସିଲେ । ବ୍ରିଟେନମାନଙ୍କ ସଙ୍ଗେ ଘୋରତର ଯୁଦ୍ଧ ହେଲା ଏବଂ ସିଜର ସେମାନଙ୍କୁ ଜିଣିଲେ । ସେମାନଙ୍କ ପାଖରୁ କର ଅମଲ କଲେ । ସେ ବ୍ରିଟେନରେ କି କି କାର୍ଯ୍ୟ କରିଥିଲେ, ବ୍ରିଟେନ୍ ଜାତିର ବିବରଣ ପ୍ରଭୃତି ବର୍ଣ୍ଣନା କରି ଖଣ୍ଡିଏ ପୁସ୍ତକ ଲେଖିଲେ । ଏହି ପୁସ୍ତକରୁ ଆମ୍ଭେମାନେ ବ୍ରିଟେନ୍ ଜାତିର ଲିଖିତ ଇତିହାସ ପାଇଅଛୁଁ । ଯାହାହେଉ, ସିଜର୍ ଅଧିକକାଳ ବ୍ରିଟେନରେ ରହି ପାରିଲେ ନାହିଁ । ସେ ରୋମକୁ ଫେରିଗଲେ । ରୋମକମାନେ ରୋମର ଅନ୍ୟ

କାର୍ଯ୍ୟରେ ବ୍ୟସ୍ତ ରହି ବ୍ରିଟେନର କଥା ଭୁଲିଗଲେ ଏବଂ ଶହେ ବର୍ଷ ପର୍ଯ୍ୟନ୍ତ ନ ଆସିବାରୁ ବ୍ରିଟନ୍‌ମାନେ ସେମାନଙ୍କ ଆଧିପତ୍ୟରୁ ରକ୍ଷା ପାଇଲେ ।

ଶହେ ବର୍ଷ ପରେ ବ୍ରିଟନ୍‌ମାନେ ରୋମକମାନଙ୍କ ବିରୋଧରେ ଗଲ୍‌ମାନଙ୍କୁ ପୁଣି ସାହାଯ୍ୟ କଲେ । ତେଣୁ ରୋମସମ୍ରାଟ୍ କ୍ଲାଡିୟସ୍ ବହଳେ ସୈନ୍ୟ ପଠାଇ ବ୍ରିଟେନ ପୂର୍ଣ୍ଣରୂପେ ଅଧିକାର କଲେ । ବ୍ରିଟନ୍‌ମାନଙ୍କର ପ୍ରଧାନ ସର୍ଦ୍ଦାର କେରେକ୍‌କେସ୍ ଯୁଦ୍ଧରେ ବନ୍ଦୀ ହୋଇ ରୋମକୁ ପ୍ରେରିତ ହେଲେ ( ଖ୍ରୀ: ଅ: ୪୫ ) ।

କେରେକ୍‌କେସଙ୍କ ପରାଜୟରେ ସମଗ୍ର ବ୍ରିଟେନ୍ ରୋମକମାନଙ୍କର ଅଧୀନ ହୋଇ ନ ଥିଲା । ବ୍ରିଟନ୍‌ମାନଙ୍କର ରାଣୀ ବୋଡିସିଆ ୬୧ ଖ୍ରୀ: ଅ: ରେ ରୋମକମାନଙ୍କ ସଙ୍ଗେ ଭୀଷଣ ଯୁଦ୍ଧ କଲେ । ସେ ନିଜ ପ୍ରଜାମାନଙ୍କୁ କହିଲେ, "ପୁତ୍ରମାନେ ! ଦେଖ, ରୋମକମାନେ ଅସ୍ମମାନଙ୍କର ରାଜ୍ୟ ନେବାକୁ ଆସୁଅଛନ୍ତି । ଅସ୍ମମାନଙ୍କର ଧନ ଜୀବନ କିଛି ନିରାପଦ ନୁହେ । ସେମାନେ ଅସ୍ମମାନଙ୍କର ଦେଶ, ଘର ଲୁଟି ନେଉଛନ୍ତି । ଘର ପୋଡ଼ି ଦେଉଛନ୍ତି । ଶିଶୁମାନଙ୍କୁ ବଳପୂର୍ବକ ଛଡ଼ାଇ ନେଉଛନ୍ତି । ଲୋକମାନଙ୍କୁ ନେଇ ସୈନ୍ୟଶ୍ରେଣୀରେ ରଖୁଛନ୍ତି । ଏତେ ଅତ୍ୟାଚାର ସହି ସୁଦ୍ଧା ଅସ୍ମମାନଙ୍କର ପ୍ରାଣ ଦେଶ ସଙ୍କଟରେ ରହିଅଛି । ଏହାର ପ୍ରତିକାର ଅସ୍ମମାନଙ୍କର କରିବା ଉଚିତ ।"




ରୋମକ ରାଜତ୍ୱରେ ଇଂଲଣ୍ଡର ମାନଚିତ୍ର

ବୋଡସିଆ ନିଜେ ବର୍ମ ପିନ୍ଧିଲେ ଏବଂ ଯୁଦ୍ଧରେ ନେତା ହେଲେ । ସୈନ୍ୟମାନେ ତାଙ୍କ କଥାରେ ବିଶେଷ ଉତ୍ସାହିତ ହେଲେ । ନୂଆ ତେଜ, ନୂଆ ସ୍ଫୂର୍ତ୍ତିରେ ଯୁଦ୍ଧକୁ ବାହାରିଲେ । ବୋଡସିଆ ଲଣ୍ଡନ ସହର ପୋଡ଼ିଦେଲେ । ହଜାର ହଜାର ରୋମକ ସୈନିକଙ୍କୁ ବଧ କଲେ । ଯାହାହେଉ ରୋମକମାନେ ସେଥିରେ ହଟିଯିବାର ପାତ୍ର ନ ଥିଲେ । ସେମାନେ ଅନେକ ସୈନ୍ୟ ଘେନି ଆସି ବୋଡସିଆଙ୍କୁ ଯୁଦ୍ଧରେ ପରାସ୍ତ କଲେ । ବୋଡସିଆ ମନେ କଲେ, ରୋମକମାନେ ତାଙ୍କୁ ବନ୍ଦୀ କରିବେ । ସେମାନଙ୍କ ହାତରେ ପଡ଼ିଲେ ସେ ଅପମାନ ପାଇବେ । ସେହି ଭୟରେ ବୋଡ଼ସିଆ ବିଷ ଖାଇ ଆତ୍ମହତ୍ୟା କଲେ ।

ଏହାପରେ ସ୍କଟଲଣ୍ଡର ଦକ୍ଷିଣକୁ ଥିବା ବ୍ରିଟେନର ସମସ୍ତ ଅଞ୍ଚଳ କ୍ରମେ ରୋମକମାନଙ୍କ ଅଧୀନ ହେଲା । କେବଳ ସ୍କଟଲଣ୍ଡର ମାଳଭୂମି ପୂର୍ବପରି ସ୍ୱାଧୀନ ରହିଲା । ସେଠାରେ କେଲ୍‌ଟମାନେ ବାସ କରୁଥିଲେ । ସେମାନଙ୍କ ଆକ୍ରମଣରୁ ନିଜ ଅଧିକୃତ ସ୍ଥାନକୁ ରକ୍ଷା କରିବା ନିମନ୍ତେ ରୋମକମାନେ ଦୁଇ ଗୋଟି ପ୍ରାଚୀର ନିର୍ମାଣ କରିଥିଲେ । ଏଥିମଧ୍ୟରୁ ଉତ୍ତର ଦିଗରେ ଥିବା ପ୍ରାଚୀର ଫୋର୍ଥ ଉପସାଗରରୁ କ୍ଲାଇଡ୍ ଉପସାଗର ପର୍ଯ୍ୟନ୍ତ ଲାଗିଥିଲା ଏବଂ ମାଟିରେ ତିଆରି ହୋଇଥିଲା । ଅନ୍ୟ ପ୍ରାଚୀରଟି ସଲଓ୍ୱେ ଉପସାଗରଠାରୁ ଟାଇନ୍ ନଦୀର ମୁହାଣ ପର୍ଯ୍ୟନ୍ତ ଯାଇଥିଲା ଏବଂ ପଥରରେ ତିଆରି ହୋଇଥିଲା । ଏହି ପ୍ରାଚୀର ଭାଙ୍ଗି ଚୁରି ଯାଇଥିଲେହେଁ ଏ ପର୍ଯ୍ୟନ୍ତ ତାହାର ଭଗ୍ନାବଶେଷ ସ୍ଥାନେ ସ୍ଥାନେ ରହିଅଛି ।



ରୋମୀୟ କାନ୍ଥର ଗୋଟିଏ ଅଂଶ

ରୋମକମାନେ ତିନି ଶହ ବର୍ଷ ବ୍ରିଟେନରେ ରହି ସେ ଦେଶ ଶାସନ କରିଥିଲେ । ସେମାନଙ୍କ ଶାସନରେ ବ୍ରିଟେନର ବିଶେଷ ଉନ୍ନତ ହୋଇଥିଲା । ସେମାନେ ଜଙ୍ଗଲ ପରିଷ୍କାର କଲେ, ଜଳରେ ବୁଡ଼ି ରହିଥିବା ସନ୍ତସନ୍ତିଆ ଜମିରୁ ଜଳ କାଢ଼ିଦେବାର ବ୍ୟବସ୍ଥା କରି ସେଥିରେ କୃଷି କଲେ । ତାହାଯୋଗୁଁ ବ୍ରିଟେନରେ ଏତେ ଶସ୍ୟ ହେଲା ଯେ, ଲୋକେ ତାକୁ ୟୁରୋପର ଶସ୍ୟାଗାର ବା ଖମାର ବୋଲି କହିଲେ । ଦେଶରେ ଭଲ ଭଲ ସଡ଼କ ପ୍ରସ୍ତୁତ କଲେ । 'ୱାଟ୍‌ଲିଙ୍ଗ୍' ନାମରେ ଗୋଟିଏ ସଡ଼କ ଡୋଭରଠାରୁ ଲଣ୍ଡନ, ଲଣ୍ଡନଠାରୁ ଚେଷ୍ଟର, ଚେଷ୍ଟରଠାରୁ ୟର୍କ ଏବଂ ୟର୍କଠାରୁ ନିଉକେସଲ ବାଟେ ଫୋର୍ଥ ଉପସାଗର ପର୍ଯ୍ୟନ୍ତ ଯାଇଥିଲା । ଦେଶରେ ଏହିପରି ଗୁଡ଼ିଏ ଭଲ ଭଲ ସଡ଼କ ପ୍ରସ୍ତୁତ ହେବାରୁ ବାଣିଜ୍ୟ ବ୍ୟବସାୟର ପ୍ରସାର ହେଲା ।

ସେମାନେ ଅନେକ ଛୋଟ ବଡ଼ ସହର ଓ ଭିଲ୍ଲା ମଧ୍ୟ ବସାଇଥିଲେ । "ଭିଲ୍ଲା"ରୁ ତୁମ୍ଭେମାନେ ଆଜିକାଲି ଇଂରାଜୀର 'ଭିଲେଜ୍' (village—ଗ୍ରାମ) ଶବ୍ଦ ପାଇଅଛ ! ନଗରମାନଙ୍କରେ ସୁନ୍ଦର ସୁନ୍ଦର କୋଠା, ବଗିଚା, ଗୋଧାଇବା ସ୍ଥାନ, ନୃତ୍ୟସ୍ଥାନ, ପ୍ରାର୍ଥନା କରିବାର ସ୍ଥାନମାନ ତିଆରି ହୋଇଥିଲା ।

ରୋମକଗଣ ବ୍ରିଟେନମାନଙ୍କୁ ସଭ୍ୟ କରାଇଲେ । ରୋମରୁ ପ୍ରଚାରକ ଆସି ବ୍ରିଟେନରେ ଖ୍ରୀଷ୍ଟାନ୍ ଧର୍ମ ପ୍ରଚାର କଲେ । ନୂଆ ନୂଆ ଆଇନମାନ ପ୍ରଚାର କରି ଚଳାଇଲେ ଏବଂ ଦେଶରେ ଶାନ୍ତି ସ୍ଥାପନ କଲେ । କେବଳ ସେମାନେ ବ୍ରିଟେନ୍ମାନଙ୍କଠାରୁ ସମସ୍ତ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଇଥିଲେ । ତାହାର ଫଳରେ ବ୍ରିଟେନ୍ମାନେ ଯୁଦ୍ଧବିଦ୍ୟା ଭୁଲିଗଲେ । ଯେତେବେଳେ ୪୧୦ ଖ୍ରୀଷ୍ଟାବ୍ଦରେ ରୋମକମାନେ ବ୍ରିଟେନ୍ ଛାଡ଼ି ଚାଲିଗଲେ ଏବଂ ବାହାରରୁ ଶତ୍ରୁମାନେ ଆସି ବ୍ରିଟେନ୍ ଆକ୍ରମଣ କଲେ, ବ୍ରିଟେନ୍ମାନେ ସେମାନଙ୍କ ହସ୍ତରୁ ନିଜକୁ ରକ୍ଷା କରି ପାରିଲେ ନାହିଁ ।

---

## ଇଂରେଜମାନେ କେଉଁଠୁ ଆସିଲେ

ତୁମ୍ଭେମାନେ ଜାଣିଛ, ଭାରତର ଆର୍ଯ୍ୟମାନେ କାସ୍ପିୟାନ୍ ହ୍ରଦ ନିକଟରୁ, କାହାର କାହାର ମତରେ ଉତ୍ତର ମେରୁ ନିକଟରୁ ଭାରତକୁ ଆସିଥିଲେ । ସେମାନେ ସେଠାରୁ ତିନି ଦଳ ହୋଇ ତିନି ସ୍ଥାନକୁ ଯାଇଥିଲେ । ଦଳେ ଭାରତକୁ, ଦଳେ ପାରସ୍ୟକୁ ଏବଂ



ଇଂରେଜମାନଙ୍କ ଆଗମନ ସ୍ଥାନର ମାନଚିତ୍ର

ଅନ୍ୟ ଏକଦଳ ୟୁରୋପକୁ ଯାଇଥିଲେ । ବ୍ରିଟନ୍ ବା କେଲ୍ଟ ଜାତି, ଇଟାଲୀର ରୋମକ ଜାତିମାନେ ସେହି ୟୁରୋପକୁ ଆସିଥିବା ଦଳର ବଂଶଧର । ଜର୍ମାନୀର ମାନଚିତ୍ରରେ ଏଲବ୍ ଓ ରାଇନ୍ ନଦୀ ଖୋଜି ବାହାର କର । ଏହି ଦୁଇ ନଦୀର ମଧ୍ୟରେ ଥିବା ସ୍ଥାନରେ ଟିଉଟନ୍ ନାମରେ ଏକ ଜାତି ବାସ କରୁଥିଲେ । ଭାରତୀୟ ଆର୍ଯ୍ୟ, ରୋମକ, ବ୍ରିଟନ୍‌ମାନଙ୍କ ପରି ଟିଉଟନ୍‌ମାନେ ସେହି ୟୁରୋପକୁ ଆସିଥିବା ଦଳର ଗୋଟିଏ ଶାଖା ।




ସପ୍ତମଣ୍ଡଳ ଇଂଲଣ୍ଡର ମାନଚିତ୍ର

ଟ୍ୟୁଟନ୍‌ମାନେ ଦଳ ଦଳ ହୋଇ ପଞ୍ଚମ ଶତାବ୍ଦୀଠାରୁ ବ୍ରିଟେନ୍ ଆକ୍ରମଣ କଲେ । ଏମାନଙ୍କ ଦଳମାନଙ୍କୁ ଜୁଟ୍, ଏଙ୍ଗଲ୍ ଓ ସେକ୍‌ସନ୍ କହନ୍ତି । ସେମାନେ ବ୍ରିଟନମାନଙ୍କୁ ଯୁଦ୍ଧରେ ପରାସ୍ତ କଲେ ଏବଂ କ୍ରମେ ସମଗ୍ର ବ୍ରିଟେନ୍ ଅଧିକାର କରି ସେଠାରେ କେତୋଟି ଛୋଟ ଛୋଟ ରାଜ୍ୟ ସ୍ଥାପନ କଲେ । ( ଖ୍ରୀ: ଅ: ୪୪୯ )

ଏହି ଛୋଟ ଛୋଟ ରାଜ୍ୟର ରାଜାମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରୁଥିଲେ । ଏହି ଯୁଦ୍ଧର ଫଳରେ କାଳକ୍ରମେ କେତୋଟି ରାଜ୍ୟ ମିଶିଗଲା ଏବଂ ଶେଷକୁ ଦେଖାଗଲା, କେବଳ ସାତଟି ରାଜ୍ୟ ବାକୀ ଅଛୁ । ଏଙ୍ଗଲ୍‌ମାନେ ନିଜ ନାମ ଅନୁସାରେ ସମଗ୍ର ଦେଶକୁ ଏଙ୍ଗଲ-ଲେଣ୍ଡ (ଏଙ୍ଗଲ୍ ବା ଇଂରେଜମାନଙ୍କର ଦେଶ) ବା ଇଙ୍ଗ୍‌ଲଣ୍ଡ ନାମ ଦେଇଅଛନ୍ତି । ଜୁଟ୍, ସେକ୍‌ସନ୍ ଓ ଏଙ୍ଗଲମାନେ ପରସ୍ପର ମଧ୍ୟରେ ମିଶି ଯାଇଅଛନ୍ତି । ସେହି ସାତଟି ରାଜ୍ୟକୁ 'ସପ୍ତରାଜ୍ୟ' ବା ହେପ୍‌ଟାର୍କି କହନ୍ତି । କେଣ୍ଟ, ସସେକ୍‌ସ, ଇସେକ୍‌ସ, ଉଏସେକ୍‌ସ, ଏଙ୍ଗ୍ଲିଆ, ମାର୍ସିଆ ଓ ନର୍ଦମ୍ବ୍ରିଆ । ( ଖ୍ରୀ: ଅ: ୫୦୦ )

ଏହି ସପ୍ତରାଜ୍ୟ ବା ସପ୍ତମଣ୍ଡଳ ପରସ୍ପର ମଧ୍ୟରେ ଯୁଦ୍ଧ କରି ଏକ ଅନ୍ୟ ଉପରେ ରାଜାଧିରାଜ ବା ନାୟକ ହେବାକୁ ଚେଷ୍ଟା କରୁଥିଲେ । କେତେବେଳେ ମାର୍ସିଆ, କେତେବେଳେ ନର୍ଦମ୍ବ୍ରିଆ, କେତେବେଳେ ଉଏସେକ୍‌ସ ଏହିପରି ଅଧିରାଜ ହେଉଥିଲେ ଏବଂ ବ୍ରିଟେନର ପ୍ରଧାନ ଶକ୍ତିରୂପେ ନିଜର ପରିଚୟ ଦେଉଥିଲେ । ଶେଷରେ ଉଏସେକ୍‌ସ ଅନ୍ୟମାନଙ୍କୁ ପରାସ୍ତ ଓ ବଶୀଭୂତ କରି ଚିରଦିନ ସକାଶେ ନିଜର ଅଧିନାୟକତ୍ୱ ବଜାୟ ରଖିଥିଲା ।

ଇଂରେଜମାନେ ବ୍ରିଟନ୍‌ମାନଙ୍କୁ ଯୁଦ୍ଧରେ ହରାଇ ପର୍ବତ ଜଙ୍ଗଲକୁ ତଡ଼ି ଦେଲେ । ଇଂରେଜମାନେ ସେମାନଙ୍କ ଉପରେ ନାନା ଅତ୍ୟାଚାର କଲେ । ସେମାନଙ୍କ ସ୍ତ୍ରୀମାନଙ୍କୁ ଧରି ନେଇ ବଳପୂର୍ବକ ବିବାହ କଲେ ଏବଂ ଲୋକମାନଙ୍କୁ ହାଣିକାଟି ପକାଇଲେ । ବ୍ରିଟେନରେ ଯେଉଁ ଖ୍ରୀଷ୍ଟାନ୍ ଧର୍ମ ଥିଲା, ଇଂରାଜମାନେ ତାହା ବିନଷ୍ଟ କଲେ । ରୋମକମାନେ ବ୍ରିଟେନରେ ଯାହା କିଛି ସଭ୍ୟତାର ଶେଷ ଚିହ୍ନ ଛାଡ଼ି ଯାଇଥିଲେ, ସେସବୁ ଭାଙ୍ଗି ଚୂରି ଶେଷ କରିଦେଲେ ।

ଇଂରେଜମାନେ ସାନ ସାନ ଗ୍ରାମରେ ରହୁଥିଲେ, କୃଷି କରୁଥିଲେ ଏବଂ ଗୋ ମେଷାଦି ପାଳନ କରୁଥିଲେ । ସେମାନଙ୍କ ଘରମାନ ମାଟି ଓ କାଠରେ ନିର୍ମିତ ହେଉଥିଲା । ସେମାନେ ଖୁବ୍ ମଦ ଖାଇ ଏବଂ ନୃତ୍ୟଗୀତ କରି ସନ୍ଧ୍ୟାକାଳ କଟାଉଥିଲେ ।

ଇଂରେଜମାନଙ୍କ ମଧ୍ୟରେ ସମ୍ଭ୍ରାନ୍ତ ଓ ଦାସ ଦୁଇଟି ବିଭାଗ ଥିଲା । ଯେଉଁମାନେ ନିଜର ପେଟ ପୋଷି ପାରୁ ନ ଥିଲେ, ଯୁଦ୍ଧରେ ହାରି ଯାଉଥିଲେ, ସେମାନେ ଧନୀ ବା ବଳିଷ୍ଠଙ୍କ ପାଖରେ ନିଜକୁ ବିକି କରି ଦାସ ହେଉଥିଲେ । ପ୍ରଭୁମାନେ ସେମାନଙ୍କୁ ଗାଈ ବଳଦ ପରି ବ୍ୟବହାର କରୁଥିଲେ ଏବଂ ହାଟରେ ବିକି ମଧ୍ୟ କରି ପାରୁଥିଲେ ।

ପ୍ରତି ଗାଆଁର ସୀମା ନିର୍ଦ୍ଦିଷ୍ଟ ଥିଲା । ଏହି ଗାଁକୁ ଟାଉନ୍‌ସିପ୍ କହା-ଯାଉଥିଲା । କେତେକ ଟାଉନ୍‌ସିପ୍ ମିଳି ଗୋଟିଏ ହଣ୍ଡ୍ରେଡ୍ ହେଉଥିଲା । ଗୋଟିଏ ହଣ୍ଡ୍ରେଡରେ ଏଣୋ ଅଧିକରେ ଶହେଖଣ୍ଡ ଗାଆଁ ରହୁଥିଲା । ପ୍ରତି ଗାଆଁର ଲୋକେ ଗୋଟିଏ ଗଛ ତଳେ ବସି ଗାଆଁର କଳିକଜିଆ ନିଷ୍ପତ୍ତି କରୁଥିଲେ । ଏହାକୁ ଗ୍ରାମସଭା (ଭିଲେଜ୍ ମୁଟ୍) କହୁଥିଲେ । ପ୍ରତି ଗାଆଁରୁ ଚାରି ଜଣ ପ୍ରତିନିଧି ଯାଇ ଏକ ବଡ଼ ସଭା କରୁଥିଲେ ।

ତାଙ୍କୁ ହଣ୍ଡ୍ରେଡ୍ ମୁଠ୍ କହୁଥିଲେ । ସେହି ସଭା ଯୁଦ୍ଧ କରିବା ନା କରିବା ପାଇଁ ବିଚାର କରୁଥିଲା ଓ ସୈନ୍ୟ ସଂଗ୍ରହ କରୁଥିଲା; ରାଜ୍ୟର ସବୁଠୁଁ ବଡ଼ ସଭା ଉଇଟେନାଜ୍ ମୁଠକୁ ଯିବା ସକାଶେ ପ୍ରତିନିଧି ନିର୍ବାଚନ କରୁଥିଲା । ଉଇଟେନାଜ୍ ମୁଠରେ ରାଜ୍ୟର ସବୁଠୁଁ ବିଜ୍ଞ ଓ ଦୂରଦର୍ଶୀ ଲୋକ ବସୁଥିଲେ । ଏହି ମହାସଭା ରାଜ୍ୟର ଶାସନ ପାଇଁ ରାଜା ନିର୍ବାଚନ କରୁଥିଲା ଏବଂ ଯୁଦ୍ଧ, ଶାନ୍ତି ପ୍ରଭୃତି ସବୁ କଥା ବିଚାର କରୁଥିଲା ।

**[illegible]**କର୍ମଚାରୀ ବିଚାରପତିଙ୍କୁ ରୀଫ୍ କହାଯାଉଥିଲା । ମୁଠ୍ ବା ସଭା ସମ୍ମୁଖରେ ଦୋଷୀର ଦୋଷର ବିଚାର ହେଉଥିଲା । ଦୋଷୀ ବ୍ୟକ୍ତିକୁ ବାରଜଣ ସାକ୍ଷୀ ଦେବାକୁ ହେଉଥିଲା । ସାକ୍ଷୀମାନେ ତା ସକାଶେ ଶପଥ କରୁଥିଲେ । ଏହାକୁ ଶପଥ ବିଚାର ( କମ୍ପର୍ଗେଶନ୍ ) କହନ୍ତି । ଦୋଷୀ ବାରଜଣ ସାକ୍ଷୀ ଦେଇ ନ ପାରିଲେ ଦଣ୍ଡିତ ହେଉଥିଲା । ଶପଥ ବିଚାର ଛଡ଼ା ଏକ ଦୈବୀ ପରୀକ୍ଷା (ଅର୍ଡିଲ) ମଧ୍ୟ ଥିଲା । ଦୋଷୀର ଆଖିରେ ଅନ୍ଧପୋଟଳୀ ବାନ୍ଧି ଦିଆଯାଉଥିଲା ଏବଂ ତାକୁ ଏକ ତାତିଲା ଲୁହାରେ ଚାଲିବାକୁ ହେଉଥିଲା । ଫୁଟନ୍ତା ପାଣି ବା ତେଲରେ ହାତ ବୁଡ଼ାଇବାକୁ ହେଉଥିଲା, କିମ୍ବା ବେଗବତୀ ନଦୀଜଳରେ ତାହାକୁ ଫୋପାଡ଼ି ଦିଆଯାଉ ଥିଲା । ସେ ସେଥିରୁ ବିନା କ୍ଷତରେ ମୁକୁଳି ଆସିଲେ, ନିର୍ଦ୍ଦୋଷ ବୋଲି ଖଲାସ ହେଉଥିଲା ।

**ଧର୍ମ**—ଇଂରେଜମାନେ ଯେତେବେଳେ ବ୍ରିଟେନକୁ ଆସିଲେ, ସେତେବେଳେ ସେମାନେ ସୂର୍ଯ୍ୟ, ଚନ୍ଦ୍ର, ଭୂତ, ପ୍ରେତ ପ୍ରଭୃତିଙ୍କର ପୂଜା କରୁଥିଲେ । ସେମାନେ ବ୍ରିଟେନରୁ ରୋମକମାନଙ୍କ ପ୍ରଚାରିତ ଖ୍ରୀଷ୍ଟାନ୍ ଧର୍ମର ଲୋପ ସାଧନ କରିଥିଲେ । ଶେଷରେ ରୋମର ପୋପ୍ ଗ୍ରେଗୋରି କେତେଜଣ ଖ୍ରୀଷ୍ଟିଆନ୍ ପ୍ରଚାରକ ପଠାଇ ବ୍ରିଟେନର

ଇଂରେଜମାନଙ୍କ ମଧ୍ୟରେ ଖ୍ରୀଷ୍ଟାନ୍‌ଧର୍ମ ପୁଣି ପ୍ରଚାର କଲେ । ପ୍ରଥମେ କେଣ୍ଟ, ତା ପରେ ନର୍ଦମ୍ବ୍ରିଯ୍ୟା ଓ କ୍ରମେ ସମଗ୍ର ଇଂଲଣ୍ଡ ଏପର ଖ୍ରୀଷ୍ଟାନ୍‌ଧର୍ମରେ ଦୀକ୍ଷିତ ହେଲ । ରୋମକଙ୍କ ଅମଳରେ ଆୟୁର୍ଲଣ୍ଡରେ ମଧ୍ୟ ଖ୍ରୀଷ୍ଟାନ୍‌ଧର୍ମ ପ୍ରଚାରିତ ହେଲ । ଆୟୁର୍ଲଣ୍ଡରୁ ମଧ୍ୟ କେତେକ ଧର୍ମପ୍ରଚାରକ ଆସି ଇଂରେଜମାନଙ୍କୁ ଏହି ସମୟରେ ଖ୍ରୀଷ୍ଟାନ୍‌ଧର୍ମ ଶିକ୍ଷା ଦେଇଥିଲେ । କେଣ୍ଟରେ ଖ୍ରୀଷ୍ଟାନ୍‌ଧର୍ମ ପ୍ରଥମେ ପ୍ରଚାରିତ ହୋଇ ଥିବାରୁ କେଣ୍ଟରେ ଥିବା କେଣ୍ଟରବେରି ସହରରେ ପ୍ରଥମ ଖ୍ରୀଷ୍ଟାନ୍-ଗିର୍ଜା ନିର୍ମିତ ହୋଇଥିଲା । କେଣ୍ଟରବେରି ଆଜିପର୍ଯ୍ୟନ୍ତ ଖ୍ରୀଷ୍ଟାନ୍ ଧର୍ମର ପ୍ରଧାନ କେନ୍ଦ୍ର ହୋଇ ରହିଅଛି । (ଖ୍ରୀ: ଅ: ୫୯୭—୬୭୦)

---

## ଆଲ୍‌ଫ୍ରେଡ୍

ଇଂଲଣ୍ଡ ମଧ୍ୟରେ ୱେସେକ୍‌ସ ରାଜ୍ୟ କପରି ଅଧିନାୟକ ହୋଇଥିଲ, ତୁମ୍ଭେମାନେ ତାହା ପୂର୍ବେ ପଢ଼ିଅଛ । ଏହି ୱେସେକ୍‌ସରେ ଯେତେବେଳେ ଏଗ୍‌ବର୍ଟ ନାମରେ ଜଣେ ରାଜା ଥିଲେ । ଫ୍ରାନ୍‌ସରେ ସେହି ସମୟରେ ସାର୍ଲମେନ୍ ବୋଲି ଜଣେ ବିଖ୍ୟାତ ରାଜା ଥିଲେ । ସେ ଜଣେ ଉଚ୍ଚ ଧରଣର ବ୍ୟକ୍ତି ଥିଲେ । ଏଗ୍‌ବର୍ଟ ତାଙ୍କ ସଭାକୁ ଯାଇ କିଛିଦିନ ରହିଥିଲେ ଏବଂ ତାଙ୍କଠାରୁ ଅନେକ ଭଲ ଭଲ ବିଷୟ ଶିକ୍ଷା କରିଥିଲେ । ଏଗ୍‌ବର୍ଟ ନବମ ଶତାବ୍ଦୀର ଆରମ୍ଭରେ ୱେସେକ୍‌ସର ରାଜା ହୋଇଥିଲେ ଏବଂ ମାର୍ସିଆ ଓ ନର୍ଦମ୍ବ୍ରିଆ ରାଜ୍ୟକୁ ପରାସ୍ତ କରି ସେମାନଙ୍କୁ ନିଜର ଅଧୀନସ୍ଥ କଲେ ।



ଡେନ୍‌ ଜାହାଜ

ଠିକ୍‌ ଏହି ସମୟରେ ୟୁରୋପର ଉତ୍ତର ଅଞ୍ଚଳରେ ଥିବା ଡେନ୍‌ମାର୍କ ଦେଶରୁ ଡେନ୍‌ ନାମରେ ଏକ ନୂତନ ଜାତି ଇଂଲଣ୍ଡ ଆକ୍ରମଣ କଲେ । ସେମାନେ ଗ୍ରାମମାନ ଲୁଣ୍ଠନ କରୁଥିଲେ, ଘରମାନ ପୋଡ଼ି ଦେଉଥିଲେ ଏବଂ ସ୍ତ୍ରୀ ପୁରୁଷ ସମସ୍ତଙ୍କୁ ନିର୍ଦ୍ଦୟଭାବରେ ହାଣି କାଟି ପକାଉଥିଲେ । ଏଙ୍ଗ୍‌ଲିଅର ରାଜା ଏଡ୍‌ମଣ୍ଡଙ୍କୁ ଡେନ୍‌ମାନେ ଗୋଟିଏ ଗଛରେ ବାନ୍ଧି ଶର ଉପରେ ଶର ମାରି ତାଙ୍କ ପ୍ରାଣ ଶେଷ କରିଦେଲେ (ଖ୍ରୀ: ୮୭୦) । ଏଗ୍‌ବର୍ଟ ଓ ତାଙ୍କ ପରବର୍ତ୍ତୀ ତିନି ଜଣ ରାଜା ଡେନ୍‌ମାନଙ୍କ ଆକ୍ରମଣରେ ବ୍ୟସ୍ତ ହୋଇ ପଡ଼ିଲେ । ଶେଷରେ ଏଗ୍‌ବର୍ଟଙ୍କ ଚତୁର୍ଥ ନାତି ଆଲ୍‌ଫ୍ରେଡ୍‌ ଡେନ୍‌ମାନଙ୍କୁ ପରାସ୍ତ କରି ଦେଇଥିଲେ ।

ଆଲ୍‌ଫ୍ରେଡ୍‌ ପିଲାଦିନରୁ ବୁଦ୍ଧିମାନ୍‌ ଥିଲେ । ସେ ତିନି ବର୍ଷ ବୟସରେ ଖଣ୍ଡିଏ କବିତା ପୁସ୍ତକ ମୂଳରୁ ଶେଷ ପର୍ଯ୍ୟନ୍ତ କଣ୍ଠସ୍ଥ କରିଥିଲେ । ତାଙ୍କୁ ଛଅ ବର୍ଷ ବୟସ ବେଳେ ସେ ପିତାଙ୍କ ସଙ୍ଗେ ରୋମରୁ ଭ୍ରମଣ କରି ଫେରି ଆସିଥିଲେହେଁ ସେ ପିଲାଦିନରୁ

ରୁଗ୍‌ଣ ଥିଲେ । କିନ୍ତୁ ତାଙ୍କ ପର ପରାକ୍ରମୀ ରାଜା ଇଂଲଣ୍ଡର ରାଜଗାଦିରେ ଖୁବ୍ ଅଳ୍ପ ବସିଅଛନ୍ତି ।

ଆଲ୍‌ଫ୍ରେଡ୍ ୮୭୧ଖ୍ରୀ: ଅ: ରେ ଇଂଲଣ୍ଡର ରାଜା ହେଲେ ଏବଂ ଡେନ୍‌ମାନଙ୍କୁ ତଡ଼ିଦେବା ସକାଶେ ପ୍ରାଣପଣେ ଯୁଦ୍ଧ କଲେ । ସେମାନଙ୍କ ସଙ୍ଗେ ସେ ସାତବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲେ । ୮୭୮ଖ୍ରୀ:ରେ ଡେନ୍‌ମାନଙ୍କର ନେତା ଗୁଥ୍ରମ୍ ତାଙ୍କୁ ଏପରି ପରାସ୍ତ କଲେ ଯେ ଆଲ୍‌ଫ୍ରେଡ୍ ରାଜଧାନୀ ଓ ସୈନ୍ୟମାନଙ୍କୁ ଛାଡ଼ି ପଳାୟନ କଲେ ଏବଂ ଏଥେଲ୍‌ନି ନାମକ ଗୋଟିଏ ଦ୍ୱୀପରେ ଯାଇ ଲୁଚିଲେ । ସେ ସେହି ଦ୍ୱୀପରେ ଛଦ୍ମବେଶ ଧରି ଜଣେ କୃଷକର ଘରେ ଆଶ୍ରୟ ନେଇଥିଲେ । କୃଷକ ତାଙ୍କୁ ରାଜା ଆଲଫ୍ରେଡ୍ ବୋଲି ଚିହ୍ନି ପାରି ନ ଥିଲା । ସେ ତାଙ୍କୁ ନିଜର ମେଣ୍ଢା ଚରାଇବା କାମରେ ଲଗାଉଥିଲା । ଦିନେ କୃଷକର ଭାର୍ଯ୍ୟା ଆଲଫ୍ରେଡଙ୍କୁ ରୋଟି ସେକିବା କାମର ଭାର ଦେଇ ଅନ୍ୟ କାର୍ଯ୍ୟରେ ଗଲା । ଆଲ୍‌ଫ୍ରେଡ୍ ରୋଟି ସେକୁଥାନ୍ତି, କିନ୍ତୁ ନିଜ ରାଜ୍ୟ କିପରି ଉଦ୍ଧାର କରିବେ ସେ କଥା ମଧ୍ୟ ଭାବୁଥାନ୍ତି । ବୁଢ଼ୀ ଫେରି ଆସି ଦେଖିଲା ଯେ ରୋଟିତକ ପୋଡ଼ିଯାଇଛି । ତହୁଁ ସେ ତାଙ୍କ ଉପରେ ବିରକ୍ତ ହୋଇ ଗାଳି ଦେଲା ।

ଏହାର କିଛିଦିନ ପରେ ଆଲ୍‌ଫ୍ରେଡ଼ଙ୍କ ସୈନିକମାନେ ଖୋଜି ଖୋଜି ଆସି ତାଙ୍କୁ ସେହି କୃଷକର ଘରେ ଭେଟିଲେ ଏବଂ ତାଙ୍କୁ ଅଭିବାଦନ କଲେ । କୃଷକ ଓ ତାର ଗୃହିଣୀ ଏହା ଦେଖି ଭାରି ଆଶ୍ଚର୍ଯ୍ୟ ହେଲେ । ସେମାନେ ଯେତେବେଳେ ବୁଝିଲେ ଯେ ସେ ଅନ୍ୟ କେହି ନୁହନ୍ତି ନିଜେ ରାଜା, ନିଜର ବ୍ୟବହାର ସକାଶେ ଭାରି ଚିନ୍ତିତ ହେଲେ ଏବଂ ରାଜାଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ ।




ଛଦ୍ମବେଶରେ ଆଲଫ୍ରେଡ଼୍‌

ଆଲଫ୍ରେଡ଼୍‌ କହିଲେ, "ତୁମ୍ଭେମାନେ ତ କିଛି ଦୋଷ କରି ନାହଁ । ଆଉ କ୍ଷମା ପ୍ରାର୍ଥନା କରୁଛ କାହିଁକି ?"

ତତ୍‌ପରେ ଆଲ୍‌ଫ୍ରେଡ଼୍‌ ନୂଆ ସୈନ୍ୟ ସବୁ ସଂଗ୍ରହ କଲେ । ସେ ସେମାନଙ୍କୁ ନୂଆ ପ୍ରଣାଳୀରେ ଯୁଦ୍ଧ କରିବା ଶିଖାଇଲେ । ଏଥର ଗୁଥ୍ରମ୍‌ ଆଉ ତାଙ୍କୁ ଯୁଦ୍ଧରେ ପାରିଲେ ନାହିଁ । ଏଡଙ୍ଗ୍‌ଟନ୍‌ ନିକଟରେ ଯୁଦ୍ଧ ହେଲା । ଗୁଥ୍ରମ୍‌ ପରାସ୍ତ ହେଲେ ଓ ଚପେନ୍‌ହାମକୁ ପଳାଇ ଯାଇ ସେଠାରେ ଆଶ୍ରୟ ନେଲେ । ଆଲ୍‌ଫ୍ରେଡ଼୍‌ ଚପେନହାମ୍‌ ଅବରୋଧ କରନ୍ତେ ଗୁଥ୍ରମ୍‌ ସନ୍ଧି କଲେ । ଏହାକୁ ୱେଡ୍‌ମୋର ସନ୍ଧି




ଚପେନ୍‌ହାମ୍ ସନ୍ଧିରେ ଇଂଲଣ୍ଡର ମାନଚିତ୍ର

ବା ଉଏପେନ୍‌ହାମ୍ ସନ୍ଧି କହନ୍ତି ( ଖ୍ରୀ: ଅ: ୮୭୮ ) । ଏହି ସନ୍ଧିରେ ଆଲ୍‌ଫ୍ରେଡ଼ ଓ ଗୁଥ୍‌ରମ ଇଂଲଣ୍ଡକୁ ଦୁଇଭାଗରେ ବିଭକ୍ତ କଲେ । ଲଣ୍ଡନ୍‌ଠାରୁ ଚେଷ୍ଟର ପର୍ଯ୍ୟନ୍ତ ଗୋଟିଏ ସରଳରେଖା ଟାଣିଲେ ଜଣାଯିବ ଯେ ସେହି ରେଖା ସେମାନଙ୍କ ଦୁଇ ରାଜ୍ୟର ବିଭାଜକ ସୀମା ହେଲା । ଏହାର ଦକ୍ଷିଣ ଅଂଶ ଆଲ୍‌ଫ୍ରେଡ୍ ପାଇଲେ । ସେହି ଅଂଶକୁ ଲୁଣ୍ଠନ ବା ଆକ୍ରମଣ କରିବେ ନାହିଁ ବୋଲି ଡେନ୍‌ମାନେ ସ୍ୱୀକାର କଲେ ।

ଆଲ୍‌ଫ୍ରେଡ୍ ଇଚ୍ଛା କରିଥିଲେ ଡେନ୍‌ମାନଙ୍କୁ ଇଂଲଣ୍ଡରୁ ତଡ଼ି ଦେଇ ପାରିଥାନ୍ତେ, କିନ୍ତୁ ତାଙ୍କ ସୈନ୍ୟମାନେ ଯୁଦ୍ଧ କରି କରି ଥକି ଯାଇଥିଲେ । ସେ ଆଉ ଅବା କେତେ ଯୁଦ୍ଧ କରନ୍ତେ ? ଡେନ୍‌ମାନେ ମଧ୍ୟ ସହଜରେ ଇଂଲଣ୍ଡ ଛାଡ଼ି ଯାଇ ନ ଥାନ୍ତେ । ଯାଇଥିଲେ ମଧ୍ୟ ପୁଣି ନୂଆ ସୈନ୍ୟ ଆଣି ଇଂଲଣ୍ଡ ଆକ୍ରମଣ କରିଥାନ୍ତେ । ଏହି ସନ୍ଧିପରେ ତ ଆଲ୍‌ଫ୍ରେଡ୍ ଶାନ୍ତି ପାଇଲେ, ସେପରି କରିଥିଲେ ଶାନ୍ତି ପାଇ ନ ଥାନ୍ତେ । ହେଲେହେଁ ସମଗ୍ର ଇଂଲଣ୍ଡକୁ ହାତରେ ରଖିବା ପାଇଁ ମନ ମଧ୍ୟରେ ରଖି ସେ ସନ୍ଧି ସ୍ୱୀକାର କଲେ । ଫଳରେ ତାହାହିଁ ହେଲା । ଡେନ୍‌ମାନେ ନିଜେ ପାଇଥିବା ଅଂଶକୁ ଖଣ୍ଡ ଖଣ୍ଡରେ ବିଭକ୍ତ କରି ଶାସନ କଲେ । ଆଲ୍‌ଫ୍ରେଡ୍ ଗୋଟି ଗୋଟି କରି ସେମାନଙ୍କୁ ନିଜର ଅଧୀନତା ସ୍ୱୀକାର କରିବାକୁ ବାଧ୍ୟ କଲେ ଏବଂ ସମଗ୍ର ଇଂଲଣ୍ଡର ରାଜାଧିରାଜ ହେଲେ । ଏଥିରୁ ତାଙ୍କର ବୁଦ୍ଧି ଜଣା ପଡ଼ୁଅଛି ।

ଆଲ୍‌ଫ୍ରେଡ୍ ଯେ କେବଳ ଡେନ୍‌ମାନଙ୍କୁ ହରାଇଥିଲେ, ତାହା ନୁହେ । ସେ ଦେଶର ପଣ୍ଡିତମାନଙ୍କୁ ଆଦର ଓ ସମ୍ମାନ କରୁଥିଲେ ।

ତାଙ୍କ ଉତ୍ସାହ ଓ ପ୍ରେରଣାରେ ଲାଟିନ ଭାଷାରୁ ଇତିହାସ, ଭୂଗୋଳ ଓ ଦର୍ଶନ ପ୍ରଭୃତି ଶାସ୍ତ୍ରର ଇଂରାଜୀରେ ଅନୁବାଦ ହୋଇଥିଲା । ସେ ନିଜେ ଇଂରେଜ ଜାତିର ଖଣ୍ଡିଏ ଇତିହାସ ଲେଖିଥିଲେ । ତାହାକୁ ଏଙ୍ଗ୍ଲୋସେକ୍ସନ୍ କ୍ରନିକଲ୍ (Anglo-Saxon chronicle) କହନ୍ତି । ଆଲ୍‌ଫ୍ରେଡ୍ ଇଂରାଜୀରେ ଖଣ୍ଡିଏ ଅଇନ ଗ୍ରନ୍ଥ ମଧ୍ୟ ସଙ୍କଳନ କରିଥିଲେ । ଏଥିପୂର୍ବରୁ ଇଂରାଜୀ ଭାଷାରେ ପୁସ୍ତକ ନ ଥିଲା । ଆଲ୍‌ଫ୍ରେଡ୍ ଇଂରାଜୀ ଭାଷାରେ ପୁସ୍ତକ ଲେଖାଇବା ଆରମ୍ଭ କରିଥିଲେ । ସେ ଅନେକ ସ୍କୁଲ୍ ଓ ଗିର୍ଜା ବସାଇଥିଲେ । ନିଜର





ଆଲ୍‌ଫ୍ରେଡଙ୍କ ସୁନାର ହାର

ପ୍ରଜାମାନଙ୍କୁ ସେହି ସ୍କୁଲମାନଙ୍କରେ ପଢ଼ିବା ପାଇଁ ନାନାପ୍ରକାର ଉତ୍ସାହ ଦେଉଥିଲେ । ଧର୍ମ ଓ ଶିକ୍ଷା ପ୍ରଚାର କରିବାକୁ ସେ ଏକ ବଡ଼ କାର୍ଯ୍ୟ ବୋଲି ବିଚାର କରୁଥିଲେ । ସେ ପିଲାମାନଙ୍କୁ କହୁଥିଲେ, "କୃଷି କାର୍ଯ୍ୟରେ ସାହାଯ୍ୟ ନ କଲେ ମଧ୍ୟ କିଛି କ୍ଷତି ନାହିଁ, କିନ୍ତୁ ନିଶ୍ଚୟ ସ୍କୁଲକୁ ଆସିବ ।" ସ୍କୁଲରେ ଶିକ୍ଷକମାନେ କିପରି କାର୍ଯ୍ୟ କରୁଅଛନ୍ତି, ସ୍କୁଲ କିପରି ଚଳୁଅଛି, ଆଲ୍‌ଫ୍ରେଡ୍ ନିଜେ ବୁଲି ବୁଲି ସବୁ ଦେଖୁଥିଲେ ।

ଆଲ୍‌ଫ୍ରେଡ ସାନ ବଡ଼ ସମସ୍ତଙ୍କ ପ୍ରତି ସମାନ ନ୍ୟାୟ ବିଚାର କରୁଥିଲେ । ସେ ଇଂଲଣ୍ଡରେ ଆଉ ଗୋଟିଏ ବଡ଼ କାମ କରି-ଥିଲେ । ଦେଶର ପ୍ରତ୍ୟେକ ଲୋକଙ୍କୁ ଯୁଦ୍ଧବିଦ୍ୟା ଶିଖିବାପାଇଁ

କରିଲେ । ଏଥିରେ ସୈନ୍ୟସଂଖ୍ୟା ବିଶେଷରୂପେ ବଢ଼ିଗଲା । ଫଳରେ ଜାତୀୟ ସେନା ଗଠିତ ହେଲା ଏବଂ କୌଣସି ସୈନିକ ମାସେ ଯୁଦ୍ଧ କଲେ, ଦୁଇମାସ ଘରେ ବିଶ୍ରାମ ନେବାକୁ ସମର୍ଥ ହେଲା । ସେ ଗୋଟିଏ ଯୁଦ୍ଧ ଜାହାଜ ମଧ୍ୟ ପ୍ରସ୍ତୁତ କଲେ । ଏହାର ଫଳରେ ଇଂରେଜମାନେ ଜଳଯୁଦ୍ଧ କରିବାକୁ ଶିଖିଲେ ଏବଂ ବର୍ତ୍ତମାନ ସେମାନେ ପୃଥିବୀ ମଧ୍ୟରେ ଜଳଯୁଦ୍ଧରେ ବିଶେଷ ପାରଙ୍ଗମ ହୋଇଅଛନ୍ତି । ଏହି ସମସ୍ତ କାର୍ଯ୍ୟ ସକାଶେ ଲୋକେ ଆଲ୍‌ଫ୍ରେଡଙ୍କୁ ଜଣେ ବଡ଼ ରାଜା ବୋଲି କହନ୍ତି ଏବଂ ଆଲ୍‌ଫ୍ରେଡ୍‌ଙ୍କୁ ଦି ଗ୍ରେଟ୍ ବା ମହାବୀର ଆଲ୍‌ଫ୍ରେଡ୍ ଆଖ୍ୟା ଦେଇଅଛନ୍ତି ।

ଆଲ୍‌ଫ୍ରେଡ୍ ୯୦୧ ଖ୍ରୀଃଅଃ ରେ ପ୍ରାଣତ୍ୟାଗ କଲେ । କିନ୍ତୁ ସେ ନିଜ ରାଜ୍ୟର ଯେଉଁ ଉନ୍ନତି କରିଗଲେ, ତହିଁର ସୁଫଳ ତାଙ୍କ ବଂଶଧରେ-ମାନେ ଭୋଗ କଲେ । ତାଙ୍କ ପୁତ୍ର ଏଡ଼୍‌ବାର୍ଡ ନିଜକୁ ସମସ୍ତ ଇଂରେଜ ଜାତିର ରାଜା ବୋଲି ପରିଚିତ କରାଇଲେ । ତାଙ୍କ ନାତି ଏଥେଲ୍‌ଷ୍ଟାନ୍ "ବ୍ରିଟେନର ସମ୍ରାଟ୍" ଉପାଧି ଗ୍ରହଣ କଲେ । ଏମାନଙ୍କ ପରବର୍ତ୍ତୀ ରାଜା ଏଡ୍‌ଗାର୍ ଯେତେବେଳେ ଚେଷ୍ଟର୍ ଦେଖିବାକୁ ଗଲେ, ଉଏଲ୍‌ସ ଓ ସ୍କଟଲଣ୍ଡର ଆଠଜଣ ରାଜା ନାଉରି କାର୍ଯ୍ୟ କରି ତାଙ୍କୁ ଡି-ନଦୀ ପାର କରାଇଲେ । ଏଡ୍‌ଗାରଙ୍କ ମନ୍ତ୍ରୀ ଡନ୍‌ଷ୍ଟାନ୍ ବଡ଼ ବୁଦ୍ଧିମାନ୍ ଥିଲେ । ଯାଙ୍କ ହେତୁରୁ ରାଜ୍ୟରେ ଅନେକ ଉନ୍ନତି ହୋଇ-ଥିଲା । ଡନ୍‌ଷ୍ଟାନଙ୍କ କଥା ମାନି ଏଡଗାର ସବୁ କାର୍ଯ୍ୟ କରୁଥିଲେ । ଡନ୍‌ଷ୍ଟାନ୍ ମଠମାନଙ୍କର ବିଶେଷ ଉନ୍ନତି କରିଥିଲେ ଏବଂ ସନ୍ୟାସୀ-ମାନଙ୍କ ଜୀବନର ଅନେକ ପରିବର୍ତ୍ତନ ସାଧନ କରିଥିଲେ । ସେ ନିଜେ ଗୋଟିଏ ମଠର ମହନ୍ତ ଥିଲେ ।

( ୬ )

# କେନିଉଟ୍

ଏଡ଼୍‌ଗାରଙ୍କ ପୁତ୍ର ଏଥେଲ୍‌ରେଡ୍ ଅଳସୁଆ ରାଜା ଥିଲେ । ସେ ଯୁଦ୍ଧ କରିବାକୁ ନାରାଜ ଥିଲେ; ତେଣୁ ଡେନ୍‌ମାନେ ପୁଣି ଇଂଲଣ୍ଡ ଆକ୍ରମଣ କଲେ । ଏଥେଲ୍‌ରେଡ୍ ସେମାନଙ୍କୁ ତଡ଼ିବା ସକାଶେ ଯୁଦ୍ଧ ନ କରି ପ୍ରଜାମାନଙ୍କ ନିକଟରୁ ଚାନ୍ଦା ଅସୁଲ କରି ସେମାନଙ୍କୁ ଲାଞ୍ଚ [illegible] ବନ୍ଦୋବସ୍ତ କରି ଦେଉଥିଲେ । ଟଙ୍କା ଲୋଭରେ ଡେନ୍‌ମାନେ ଥରକୁଥର ଇଂଲଣ୍ଡ ଆକ୍ରମଣ କଲେ । ଏଥେଲରେଡ୍ ମନେ କଲେ, ଇଂଲଣ୍ଡରେ ଥିବା ଡେନ୍‌ମାନଙ୍କ ହେତୁରୁ ଡେନମାର୍କରୁ ଡେନ୍‌ମାନେ ଆସି ଏପରି ଆକ୍ରମଣ କରୁଅଛନ୍ତି । ୧୦୦୨ ଖ୍ରୀଷ୍ଟାବ୍ଦରେ ଯେତେ ଡେନ୍‌ମାନେ ରାତିରେ ଉତ୍ସବ କରୁଥିବା ବେଳେ ଏଥେଲ୍‌ରେଡ୍ ସେମାନଙ୍କୁ ନିଷ୍ଠୁର ଭାବରେ ହତ୍ୟା କଲେ । ସେହି ଖବର ପାଇ ଡେନ୍‌ମାର୍କର ରାଜା ସୁଇନ୍ ଭାରି ଚିଡ଼ିଗଲେ ଏବଂ ବହୁତ ସୈନ୍ୟ ନେଇ ଇଂଲଣ୍ଡ ଆକ୍ରମଣ କଲେ । ଏଥେଲ୍‌ରେଡ୍ ଫ୍ରାନ୍‌ସର ନର୍ମାଣ୍ଡିକୁ ପଳାଇଗଲେ । କିଛିଦିନ ପରେ ଡେନ୍‌ମାର୍କର ରାଜା ସୁଇନ୍ ମରିଯିବାରୁ, ଏଥେଲ୍‌ରେଡ୍ ଇଂଲଣ୍ଡକୁ ଫେରିଆସି ସୁଇନଙ୍କ ପୁଅ କେନିଉଟଙ୍କ ସଙ୍ଗେ ଯୁଦ୍ଧ କଲେ । ଏଥେଲ୍‌ରେଡ୍ ଓ ତାଙ୍କ ପୁଅ ଏହି ଯୁଦ୍ଧରେ ମଲେ । ଫଳରେ କେନିଉଟ୍ ସମସ୍ତ ଇଂଲଣ୍ଡର ରାଜା ହେଲେ (ଖ୍ରୀ: ଅ: ୧୦୧୬)

କେନିଉଟ୍ ଜଣେ ଭଲ ରାଜା ଥିଲେ । ତାଙ୍କର ଅନ୍ୟାୟ ନାହିଁ ଥିଲା । ଥରେ ତାଙ୍କର କେତେକ ଖୋସାମଦିଆ କର୍ମଚାରୀ ତାଙ୍କୁ କହିଲେ, "ମହିମା, ଆପଣ ବଡ଼ ରାଜା । ପର୍ବତ ନଦୀ, ସମୁଦ୍ର ସବୁ ଆପଣଙ୍କର କଥା ମାନିବାକୁ ବାଧ୍ୟ । ଆପଣ ସମୁଦ୍ର

ଭିତରେ ବସିଲେ ବ ସେ ଆପଣଙ୍କୁ ସ୍ଥାନ ଦେଇ ପଛକୁ ହଟିଯିବ ।” କେନିଉଟ୍ ଯେତେ କହିଲେ, ସେମାନେ ମାନିଲେ ନାହିଁ । ଥରେ ପରୀକ୍ଷା କରିବାକୁ କହିଲେ । କେନିଉଟ୍ ଗୋଟାଏ ଚୌକି ଅଣାଇ ସମୁଦ୍ର ଭିତରେ ବସିଲେ, ଲହଡ଼ି ଆସିବାରୁ ତାହାଙ୍କର ଲୁଗାପଟା ସବୁ ଭିଜିଗଲା । କେନିଉଟ୍ ସେମାନଙ୍କୁ ଗାଳିଦେଇ




କେନିଉଟ୍‌ଙ୍କ ସାମ୍ରାଜ୍ୟ

କହିଲେ, “ସମୁଦ୍ର କାହାକୁ ମାନିବ ନାହିଁ । ସେ କେବଳ ଈଶ୍ୱରଙ୍କ କଥା ମାନେ ।”

କେନିଉଟ୍ ସବୁବେଳେ ପରିଶ୍ରମ କରୁଥିଲେ ଏବଂ ପ୍ରଜାମାନଙ୍କ ଭଲ ପାଇଁ ଭାବୁଥିଲେ । ସେ ସମସ୍ତଙ୍କ ପ୍ରତି ସମାନ ଭାବରେ ବ୍ୟବହାର

କରୁଥିଲେ । ଇଂରେଜମାନଙ୍କ ଦେଶରେ ଅଗରୁ ଯେଉଁ ଆଇନ ଥିଲା, ସେ ସେହି ଆଇନ ମାନି ଇଂଲଣ୍ଡ ଶାସନ କରୁଥିଲେ । ସେ ଇଂରେଜମାନଙ୍କୁ ବଡ଼ ବଡ଼ ଚାକିରି ଦେଉଥିଲେ । ୬।

ଶାସନର ସୁବିଧା ସକାଶେ କେନିଉଟ୍ ଇଂଲଣ୍ଡକୁ ଚାରିଭାଗରେ ବିଭକ୍ତ କରିଥିଲେ । ଊଏସେକ୍ସରେ ସେ ନିଜେ ରହି ଶାସନ କରୁଥିଲେ; ଅନ୍ୟ ତିନି ପ୍ରଦେଶ ମାର୍ସିଆ, ନର୍ଦମ୍ବ୍ରିଆ ଓ ଏଙ୍ଗ୍ଲିଆରେ ସେ ତିନିଜଣ ଶାସନକର୍ତ୍ତା ରଖିଥିଲେ । ଏହି ଶାସନକର୍ତ୍ତାମାନଙ୍କୁ ଆର୍ଲ କହା ଯାଉଥିଲା । ଏହି ଆର୍ଲ ରଖି କେନିଉଟ୍ ଭଲ କାମ କରି ନ ଥିଲେ । କାରଣ ପଛକୁ ଆର୍ଲମାନଙ୍କ କ୍ଷମତା ଓ ପ୍ରଭାବ ବଢ଼ିଯାଇଥିଲା । ତହୁଁ ସେମାନେ ନିଜ ମଧ୍ୟରେ କଳିଗୋଳ କଲେ ଏବଂ ରାଜାଙ୍କୁ ମଧ୍ୟ ମାନିଲେ ନାହିଁ ।

କେନିଉଟ୍ ଖ୍ରୀ: ଅ: ୧୦୧୬ରୁ ୧୦୩୫ ପର୍ଯ୍ୟନ୍ତ ରାଜା ହୋଇଥିଲେ । ତାଙ୍କ ମୃତ୍ୟୁର ଅନେକ ଦିନ ପରେ ଇଂରେଜମାନେ ଊଏସେକ୍ସର ଆର୍ଲ ହେରଲ୍ଡଙ୍କୁ ରାଜା କଲେ (ଖ୍ରୀ: ଅ: ୧୦୬୬) । ଏଥିରେ ନର୍ଦମ୍ବ୍ରିଆ ଓ ମାର୍ସିଆର ଆର୍ଲମାନେ କଳି କଲେ । ଏହିପରି କଳି ହେଉଥିବା ଜାଣି ନର୍ମାଣ୍ଡିର ଡିଉକ୍ ଉଇଲିୟମ୍ ଇଂଲଣ୍ଡ ଆକ୍ରମଣ କରି ହେରଲ୍ଡଙ୍କୁ ଯୁଦ୍ଧରେ ନିହତ କଲେ ଏବଂ ଇଂଲଣ୍ଡର ରାଜା ହେଲେ ।

( ୭ )

# ବିଜୟୀ ଉଇଲ୍ୟମ୍

୲୬

ହେରଲ୍ଡ ଓ ଉଇଲ୍ୟମ ହେଷ୍ଟିଂସ୍ ଯୁଦ୍ଧକ୍ଷେତ୍ରରେ ନିଜ ନିଜ ଭାଗ୍ୟ ପରୀକ୍ଷା କଲେ ( ଖ୍ରୀ: ଅ: ୧୦୬୬ ) । ପ୍ରଥମେ ପ୍ରଥମେ ଇଂରେଜମାନେ ଜିଣିବେ ବୋଲି ଜଣା ପଡ଼ିଲା । ଉଇଲ୍ୟମ ଗୋଟିଏ ବୁଦ୍ଧି କଲେ । ସେ ପଳାଇଯିବାର ଛଳନା କଲେହେଁ ନିଜ ସୈନ୍ୟମାନଙ୍କୁ ଯୁଦ୍ଧ ନିୟମରେ ସଜାଇ ରଖିଥାନ୍ତି । ତାଙ୍କ ସୈନିକମାନେ ପଙ୍କ୍ତି ଭାଙ୍ଗି ନ ଥାନ୍ତି ।




ହେଷ୍ଟିଂସ୍ ଯୁଦ୍ଧ

ଇଂରେଜମାନେ ସେମାନେ ପଳାଇ ଯାଉଛନ୍ତି ଭାବି ନିଜର ପଙ୍କ୍ତି ଭାଙ୍ଗି ସେମାନଙ୍କୁ ଗୋଡ଼ାଇଲେ । ଯେତେବେଳେ ଉଇଲ୍ୟମ୍ ଦେଖିଲେ ଯେ ଇଂରେଜମାନେ ପଙ୍କ୍ତି ଭାଙ୍ଗି ତାଙ୍କୁ ଗୋଡ଼ାଇଛନ୍ତି, ସେ ହଠାତ୍ ଫେରିକି ସେମାନଙ୍କୁ ଆକ୍ରମଣ କଲେ । ନର୍ମାନ୍‌ମାନେ ତୀରବୃଷ୍ଟି କଲେ । ଗୋଟିଏ ତୀର ଆସି ହେରଲ୍ଡଙ୍କ ଚକ୍ଷୁରେ ପଶିଲା । ହେରଲ୍ଡ ଯୁଦ୍ଧଭୂମିରେ ମରି ପଡ଼ିଲେ । ଇଂରେଜମାନେ ପରାସ୍ତ ହେଲେ । ଉଇଲ୍ୟମ୍ ଡିସେମ୍ବର ୨୫ ତାରିଖ ଦିନ ଇଂଲଣ୍ଡର ରାଜା ହେଲେ । ଓ୍ୱେଷ୍ଟ ମିନ୍‌ଷ୍ଟରରେ ଏହିଠାରେ ତାଙ୍କର ଅଭିଷେକ ହେଲା ।



ଓଏଷ୍ଟ ମିନଷ୍ଟର୍ ଏବ



ନର୍ମାନ୍ ସୈନିକ

ଉଇଲିୟମ୍ ଜଣେ ଭଲ ସେନାପତି ଥିଲେ । ତାଙ୍କ ମାଆ ଜଣେ ମୋଚିର ଝିଅ ଥିଲେ । ତାଙ୍କ ପିତାଙ୍କୁ ନର୍ମାଣ୍ଡିର ଲୋକେ ଶୟତାନ ବୋଲି ଡାକୁଥିଲେ । ଉଇଲିୟମ୍ ନିଜେ ଅତି ନିଷ୍ଠୁର ଥିଲେ ଏବଂ ନିଜର ସ୍ୱାର୍ଥ ସିଦ୍ଧି ଲାଗି ଯେ କୌଣସି କାର୍ଯ୍ୟ କରିବାକୁ ଲଜ୍ଜା ବୋଧ କରୁ ନ ଥିଲେ । ହେଲେହେଁ ରାଜା ହୋଇ ସେ ଭଲରୂପେ ରାଜ୍ୟ ଚଳାଇଲେ । ଇଂଲଣ୍ଡରେ ଆଗରୁ ଥିବା ନିୟମମାନ ମାନି ଶାସନକାର୍ଯ୍ୟ ଚଳାଇଲେ । ରାଜ୍ୟରେ ଯେଉଁଠି ଯାହା ବିଦ୍ରୋହ ହେଲା, ସବୁ ଦମନ କଲେ । ମର୍ସିଆ ଓ ନର୍ଦମ୍ବ୍ରିୟାର ଅର୍ଲମାନଙ୍କୁ ତଡ଼ିଦେଇ ସମଗ୍ର ଇଂଲଣ୍ଡ ନିଜ ହାତରେ ରଖିଲେ । ଯେଉଁ ପ୍ରଜାମାନେ ତାଙ୍କୁ ମାନିଲେ ନାହିଁ, ସେମାନଙ୍କର ଘରଦ୍ୱାର ପୋଡ଼ିଦେଲେ ଏବଂ ସମସ୍ତଙ୍କୁ ନିଷ୍ଠୁରଭାବରେ ବାଧ୍ୟ କଲେ । ତାଙ୍କର ଭୀଷଣ ଯୁଦ୍ଧ, ନିର୍ଦ୍ଦୟ ହତ୍ୟା ଓ କଠୋର ଶାସନରେ ଇଂରେଜମାନେ ଏପରି ଡରିଗଲେ ଯେ ସେମାନେ ଆଉ ବିଦ୍ରୋହ କରିବାକୁ ସାହସ ସୁଦ୍ଧା କଲେ ନାହିଁ ।




ଉଇଲିଅମ୍‌ଙ୍କର ଇଂରେଜ ଓ ନର୍ମାନ୍ ରାଜ୍ୟ ........
ଉଇଲିଅମ୍ ଯେଉଁ ରାଜ୍ୟରେ ଲର୍ଡ ଥିଲେ ........
ବିଦେଶୀ ରାଜ୍ୟ ........
ହେଷ୍ଟିଂ ଯୁଦ୍ଧଠାରୁ ଲଣ୍ଡନ ପର୍ଯ୍ୟନ୍ତ ଉଇଲିଅମ୍ ସେନାଙ୍କ ଗତି ---

ଉଇଲିୟମଙ୍କ ରାଜ୍ୟ

ଉଇଲିୟମ୍ ଇଂରେଜମାନଙ୍କଠାରୁ ସମସ୍ତ ଜମି ବାଜ୍ୟାପ୍ତ କରି ନେଲେ । ସେସବୁ ତାଙ୍କ ନିଜ ନର୍ମାନ୍ ସୈନିକମାନଙ୍କୁ ପୁରସ୍କାର ଦେଲେ । କିନ୍ତୁ ସେ ଭଲରୂପେ ଜାଣିଥିଲେ ଯେ ତାଙ୍କ ନର୍ମାନ୍‌ମାନେ ଅବାଧ୍ୟ ଅଟନ୍ତି । ତେଣୁ ସେ ଇଂରେଜମାନଙ୍କ ପ୍ରତି ଭଲ ବ୍ୟବହାର କଲେ ଏବଂ ସେମାନଙ୍କୁ କହିଲେ, "ମୁଁ ତୁମ୍ଭମାନଙ୍କର ରାଜା, ଅତ୍ୟାଗ୍ରହୀ ନର୍ମାନ୍‌ମାନଙ୍କ ହାତରୁ କେବଳ ମୁଁ ତୁମ୍ଭମାନଙ୍କୁ ରକ୍ଷା କରିବି । ସେମାନଙ୍କୁ ଅଧୀନ କରି ରଖିବା ନିମନ୍ତେ ତୁମ୍ଭେ-ମାନେ ମୋତେ ସାହାଯ୍ୟ କର ।" ତେଣେ ଇଂରେଜମାନେ ବିଦ୍ରୋହ କଲେ ସେ ନର୍ମାନମାନଙ୍କୁ କହୁଥିଲେ—"ଦେଖ, ଇଂଲଣ୍ଡର




ଉଇଲିୟମ ଅଶ୍ୱପୃଷ୍ଠରେ

ଅମ୍ଭେମାନେ ବିଦେଶୀ ଶାସନକର୍ତ୍ତା । ଇଂରେଜମାନଙ୍କର ବିଦ୍ରୋହ ଦମନ କରିବାରେ ତୁମ୍ଭେମାନେ ମୋତେ ସାହାଯ୍ୟ ନ କଲେ

ଏ ଓଦେଶ ଏ ଭୂମି ତୁମ୍ଭେମାନେ ବା ମୁଁ କେହି ଭୋଗ କରି ପାରିବା ନାହିଁ ।” ଏହାପରେ ସେ ଉଭୟ ଜାତିକୁ ଉଭୟ ଜାତିର ବିପକ୍ଷରେ ଛୁଡ଼ା କରାଇ ସବୁ ପ୍ରକାର ବିଦ୍ରୋହ ଦମନ କରୁଥିଲେ ଏବଂ ରାଜ୍ୟରେ ଶୃଙ୍ଖଳା ରଖିଥିଲେ ।

ଇଂଲଣ୍ଡର ପ୍ରଜାଙ୍କ ଠାରୁ ସମସ୍ତ ଜମିବାଡ଼ି ଉଇଲିୟମ୍ ଛଡ଼ାଇ ନେଇ ନିଜ ସୈନ୍ୟମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । କେତେଜଣ ପ୍ରଧାନ ନର୍ମାନ୍ ତାଙ୍କଠାରୁ ସେହି ଜମିମାନ ପାଇଲେ । ଏମାନଙ୍କୁ ବ୍ୟାରନ୍ କହାଯାଏ । ବ୍ୟାରନ୍‌ମାନେ ଜମି ପରିବର୍ତ୍ତରେ ଯୁଦ୍ଧବେଳେ ରାଜାଙ୍କୁ ସୈନ୍ୟ ଯୋଗାଇ ସାହାଯ୍ୟ କରୁଥିଲେ । ତେଣେ ବ୍ୟାରନ୍-ମାନେ କେତେଜଣ ନର୍ମାନଙ୍କୁ ଯୁଦ୍ଧବେଳେ ସୈନ୍ୟ ଯୋଗାଇବା ସର୍ତ୍ତରେ ଜମିମାନ ଦେଲେ । ଏହାପରେ ସବାଶେଷରେ ଜଣେ ଜଣେ ସୈନିକ କିଛି କିଛି ଜମି ପାଇଲେ । ସେମାନେ ନିଜେ ଚାଷ କରନ୍ତି ଏବଂ ଯୁଦ୍ଧବେଳେ ନିଜେ ଯାଇ ଯୁଦ୍ଧ କରନ୍ତି । ଏହି ପ୍ରଥାକୁ 'ସାମନ୍ତପ୍ରଥା' କହନ୍ତି ।

ଏହି ପ୍ରଥା ଅନୁସାରେ ରାଜା କେବଳ ବ୍ୟାରନ୍‌ମାନଙ୍କୁ ସୈନ୍ୟ ପାଇଁ ବାଧ୍ୟ କରି ପାରୁଥିଲେ । ଯେଉଁମାନେ ବ୍ୟାରନ୍‌ମାନଙ୍କଠାରୁ ଯୁଦ୍ଧ କରିବା ସର୍ତ୍ତରେ ଜମି ପାଇଲେ ବା ପ୍ରତ୍ୟକ୍ଷ ଚାଷ କରି ସୈନିକ ହେଲେ, ସେମାନଙ୍କ ଉପରେ ରାଜାଙ୍କର କୌଣସି ପ୍ରକାର ପ୍ରତ୍ୟକ୍ଷ ଅଧିକାର ନ ଥିଲା । ସୁତରାଂ ଯଦି ବ୍ୟାରନ୍‌ମାନେ କୌଣସିମତେ ରାଜାଙ୍କ କଥା ମାନୁ ନ ଥିଲେ ବା ବିଦ୍ରୋହ କରୁଥିଲେ, ସେମାନଙ୍କୁ ଦମନ କରିବା ରାଜାଙ୍କ ପକ୍ଷରେ ନିତାନ୍ତ କଷ୍ଟକର ହୋଇ ପଡ଼ୁଥିଲା । ସେଥିସକାଶେ ଉଇଲିୟମ ଗୋଟିଏ ନୂଆ କଥା ବାହାର



ଉଇଲିୟମଙ୍କ ମୁଦ୍ରା

କଲେ । ବେରନ୍‌ମାନେ ତାହାଙ୍କୁ ଜମି ଦେଲେ, ସେମାନଙ୍କୁ ସମସ୍ତଙ୍କୁ ଡକାଇ ଗୋଟିଏ ଶପଥ କରାଇଲେ । ଯଦି ବେରନ୍‌ମାନେ ରାଜାଙ୍କ ବିରୋଧରେ ବିଦ୍ରୋହ କରନ୍ତି ତେବେ ଭୂମି ପାଉଥିବା ଲୋକେ ବେରନଙ୍କ କଥା ନ ମାନି ରାଜାଙ୍କ କଥା ମାନିବେ ।

ବେରନ୍‌ମାନଙ୍କର କାହାର କେତେ ଜମି ଅଛି, ରାଜାଙ୍କୁ ସାହାଯ୍ୟ କରିବା ନିମନ୍ତେ କିଏ କେତେ ସୈନ୍ୟ ରଖିଛନ୍ତି, ରାଜ୍ୟର କେଉଁଠାରେ କେତେ ଶସ୍ୟକ୍ଷେତ୍ର ବା ଗୋଚର ଭୂମି ଅଛି, ପ୍ରଜା-ମାନଙ୍କର କାହାର କେତେ ସମ୍ପତ୍ତି ବା ଗୋରୁ ଅଛନ୍ତି, କେଉଁ ପ୍ରଜା ରାଜାଙ୍କୁ କେତେ କର ଦେବ, ଏସବୁ ଠିକ୍‌ରୂପେ ନିର୍ଣ୍ଣୟ କରାଇ ଉଇଲିୟମ୍ ଗୋଟିଏ ବଡ଼ ପୁସ୍ତକରେ ଲେଖାଇ ରଖିଥିଲେ । ଏହି ପୁସ୍ତକ ଲାଟିନ ଭାଷାରେ ଲିଖିତ ହୋଇଥିଲା । ତାହାକୁ 'ଡୋମେସ୍‌ଡେ ବୁକ୍' କହନ୍ତି । ଉଇଲିୟମଙ୍କ କର୍ମଚାରୀମାନେ ଏପରି ତଦାରଖ କରିଥିଲେ ଯେ, କାହାର ପଟେ ବଳଦ, ଗାଈ ବା ଘୁଷୁରି ଏହି ହିସାବରୁ ଛାଡ଼ ହୋଇ ନ ଥିଲା । ଏହି ପୁସ୍ତକରୁ ସେ କାଳର ଇତିହାସ ଲେଖିବାର ସାହାଯ୍ୟ ମିଳୁଅଛି ।

ଡୋମେସ୍ ଡେ ବୁକ୍‌ରୁ ନିମ୍ନଲିଖିତ କଥା ଜଣାଯାଏ ।

(୧) ଗ୍ରାମକୁ ମେନର କହୁଥିଲେ । ସାଧାରଣତଃ ନର୍ମାନ୍‌ମାନେ ଗ୍ରାମପତି ଥିଲେ । ଗ୍ରାମର ଲୋକେ ତାଙ୍କୁ କୁକୁଡ଼ା, ଅଣ୍ଡା, ମହୁ ଦିଅନ୍ତି । ତାଙ୍କ ଜମିରେ କାମ କରନ୍ତି । ତାହା ବଦଳରେ ସେମାନେ କିଛି ପାଆନ୍ତି ନାହିଁ । ଗ୍ରାମ ମଝିରେ ଗ୍ରାମପତିଙ୍କ ଘର ଥାଏ ଏବଂ ଗୋଟିଏ ଗର୍ଜା ଓ ଯାଜକଙ୍କ ଘର ଥାଏ । ଗ୍ରାମରେ କେତେକ ଅବାଧୀ

XXV TERRA WILLI DE BRAIOSE. In Radelau Hd.
Willelmus de braiose ten de rege Sudcote. Bruniard
tenuit de rege. E. Te se defd p. ii. hid. modo p una hida.
Tra e iii. car. In dnio e una. 7 v. uitti 7 viii. bord cu ii.
car. Ibi molin de xviii. solid. 7 piscaria de L. denar.
Valuit. iiii. lib. modo. c. solid.
TERRA WILLELMI LOVET. In Tuchelai Hd.
XXVI. Willelmus Louet ten de rege ... Toui tenuit de rege. E.
in alod. Te se defd p. viii. hid. modo p. i. hida 7 una v.
Tra e. v. car. In dnio dim car. 7 iiii. uitti 7 iii. bord cu ii.
car. Ibi ii. serui. 7 molin de xii. solid. 7 iiii. ac pti.
Silua de. v. porc. Valuit viii. lib. 7 post. c. sol. modo. lxx. sol.
Ist. W. ten ... Toui tenuit. In ... Hd.
de rege. E. in alod. p ... Te 7 m p. iii. hid 7 una v.
Tra e. ii. car. Ibi sunt. ii. uitti 7 vii. bord cu ii. car.
7 xiii. ac pti. Silua ad clausura. Valuit. xl. sol. modo. xxx. solid.
Ist. W. ten ... Toui tenuit. In ... Hd.
de rege. E. Te p. v. hid. m p. ii. hid 7 dimid. Tra e
iiii. car. In dnio e una. 7 iii. uitti 7 iiii. cot. cu i. car
7 dimid. Ibi molin de xii. sol 7 vi. den. 7 xl. ac pti.
Valuit. vi. lib 7 ualet. quis redd. vii. lib.

ଡୋମେସ୍ ଡେ ବୁକ୍‌ର ଲେଖା

ଜମି ଥାଏ । ତାହା ଛଡ଼ା ଗ୍ରାମରେ ଥିବା ଅନାବାଦୀ ଜମିରେ ପ୍ରଜାଙ୍କର ପଶୁମାନେ ଚରନ୍ତି । ତା ପଛରେ ଗାଆଁର ଜଙ୍ଗଲ ଥାଏ । ଜଙ୍ଗଲରୁ ସମସ୍ତେ ଜାଳଣି କାଠ ଅଣନ୍ତି ।

(୨) ଚଷାକୁ ଭିଲେନ୍ କହନ୍ତି । ସେ ଗୋଟିଏ କୁଡ଼ିଆ କରି ରହେ । କୁଡ଼ିଆ ପାଖରେ ତାର ଅଳ୍ପ ଜମି ଥାଏ । ସେ ତହିଁରେ ବଗିଚା କରେ ଓ କୁକୁଡ଼ା ରଖେ । ଗାଆଁର ସାଧାରଣ ଭୂମିରେ ସେ

ପଶୁ ଚରାଏ । ଜଙ୍ଗଲରୁ କାଠ ଆଣେ । ନଦୀର ଏକ ଅଂଶରେ ମାଛ ମାରେ । ନିଜର ଅଳ୍ପ ଜମି ଥିଲେ ତହିଁରେ ଚାଷ କରେ । ତାହାର ମାଲିକର ଜମିରେ ସେ ପ୍ରତି ସପ୍ତାହରେ ଦୁଇ ଦିନ ବିନା ମଜୁରିରେ କାମ କରେ । ଏହା ତାହାର ଜମିର କର । ସେ ଗ୍ରାମ ଛାଡ଼ି କୁଆଡ଼େ ଯାଇ ପାରେ ନାହିଁ । ନିଜ ପୁଅକୁ ସ୍କୁଲକୁ ପଠାଇ ପାରେ ନାହିଁ । ମାଲିକ ଅନୁମତି ନ ଦେଲେ ଝିଅର ବିବାହ ସୁଦ୍ଧା ଦେଇ ପାରେ ନାହିଁ ।

(୩) ଜମିଗୁଡ଼ିକ ଗାଆଁର ସାଧାରଣ ସମ୍ପତ୍ତି । ପ୍ରତି ଲୋକ ଜଣକୁ ବର୍ଷକ ପାଇଁ ଭାଗ କରିବାକୁ ଦିଆଯାଏ । ଭାଗ ପାଇଥିବା ଜମିର ଗୋଟିଏ କଡ଼ରେ ଗହମ, ଗୋଟିଏ କଡ଼ରେ ବାଲି, ଆଉ ଗୋଟିଏ କଡ଼ରେ ଅନ୍ୟାନ୍ୟ ଫସଲ ଚାଷ ହୁଏ । ଖଣ୍ଡିଏ ଜମିରେ ବର୍ଷେ ଚାଷ ହେଲେ ଆଉ ଖଣ୍ଡିଏ ଜମି ପଡ଼ିଆ ରହେ । ପଡ଼ିଆ ଜମିରେ ପରବର୍ଷ ଚାଷ ହୁଏ ।

(୪) ପ୍ରତି ଗାଆଁରେ ମେନରପତି ଓ ପୁରୋହିତଙ୍କ ଛଡ଼ା ସମ୍ଭବତଃ ଆଉ କେହି ଲେଖି ପଢ଼ି ଜାଣୁ ନ ଥିଲେ । ପୁରୋହିତଙ୍କୁ ସମସ୍ତେ ଭାରି ଭକ୍ତି କରୁଥିଲେ । ମଠମାନଙ୍କରେ ମହନ୍ତ ଓ ମାତା ରହୁଥିଲେ । ସେମାନେ ଦିନରେ ସାତଥର ଗିର୍ଜାକୁ ଯାଇ ଉପାସନା କରୁଥିଲେ ଏବଂ ଧର୍ମ ସକାଶେ ଜୀବନ ଉତ୍ସର୍ଗ କରିଥିଲେ । ସେମାନେ ମୋଟା କନାର ଗାଉନ୍ ଓ ହୁଡ଼୍ ପିନ୍ଧୁଥିଲେ ଏବଂ କାଠର କଠାଉ ବ୍ୟବହାର କରୁଥିଲେ । ବାଇବଲ୍ ଉତାରିବା ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଅକ୍ଷରଗୁଡ଼ିକ ଅତି ସୁନ୍ଦର ହେଉଥିଲା । ଲେଖାର ମୂଳ ଅକ୍ଷର ଗୁଡିକ ଗୋଟାଏ ଗୋଟାଏ ସୁନ୍ଦର ଛବି ମଧ୍ୟରେ ରହୁଥିଲା ।



ସେଣ୍ଟ ଏଟିନ୍ ଗିର୍ଜାଘର

ଉଇଲ୍‌ୟମ୍ ସମଗ୍ର ଇଂଲଣ୍ଡକୁ ଏକ ଶାସନରେ ରଖିଥିଲେ । ଫଳରେ ଇଂରେଜ୍,ଡେନ୍ ଓ ନର୍ମାନ୍‌ମାନେ ପରସ୍ପର ମଧ୍ୟରେ ଏକତା ଓ ବନ୍ଧୁତା ସ୍ଥାପନ କରି କ୍ରମେ କ୍ରମେ ମିଶିଗଲେ । ଶେଷରେ ସେମାନେ ଗୋଟିଏ ଜାତିରେ ପରିଣତ ହେଲେ । ଉଇଲ୍‌ୟମ୍ ଓ ତାଙ୍କ ବଂଶଧରମାନେ କଠୋର ଶାସନକର୍ତ୍ତା ଥିଲେ । ତହିଁରେ ଦେଶରେ ଶାନ୍ତି ଓ ସୁଶାସନ ପ୍ରତିଷ୍ଠିତ ହୋଇଥିଲା । ରାଜାଙ୍କର କ୍ଷମତା ବଢ଼ି ଯାଇଥିଲା । ଶାସନର ପ୍ରତି ବିଭାଗରେ ରାଜା କ୍ଷମତା ଚଳାଇ-

ବାକୁ ସମର୍ଥ ହୋଇଥିଲେ । ଉଇଲିୟମ୍ ଯେତେବେଳେ ଇଂଲଣ୍ଡ ଜୟ କରିବା ନିମନ୍ତେ ଆସିଥିଲେ, ରୋମରେ ପୋପ ତାହାଙ୍କୁ ଆଶୀର୍ବାଦ କରିଥିଲେ । ତେଣୁ ଉଇଲିୟମ୍ ତାଙ୍କୁ ଖୁବ ମାନୁଥିଲେ । ଫଳରେ ପୋପ୍ ଇଂଲଣ୍ଡର ଗିର୍ଜା ଉପରେ ଖୁବ୍ କ୍ଷମତା ଚଳାଇଥିଲେ ଏବଂ ବହୁତ କର୍ ଅଦାୟ କରୁଥିଲେ ।

ବିଜୟୀ ଉଇଲିୟମ୍ ୧୦୮୭ ରେ ମଲେ । ତାଙ୍କ ପରେ ତାଙ୍କ ପୁଅ ରୁଫସ୍ ରାଜା ହୋଇ କଠୋର ଶାସନ ଓ ଅତ୍ୟାଚାର ଆରମ୍ଭ କଲେ । ସେ ଦିନେ ବନରେ ଶିକାର କରୁଥିବା ବେଳେ କିଏ ତାଙ୍କୁ ଶର ବିନ୍ଧ ମାରି ପକାଇଲା (୧୧୦୦) ।

ତାଙ୍କ ପରେ ହେନ୍‌ରି ରାଜା ହେଲେ । ସେ ଜଣେ ନ୍ୟାୟ-ପରାୟଣ ରାଜା ଥିଲେ । ସେ ନିଜ ବିଗ୍ଦ୍ଗରପତିମାନଙ୍କୁ ଗାଆଁ ଗାଆଁକୁ ପଠାଇ ଲୋକଙ୍କର ମକଦ୍ଦମାମାନ ନିଷ୍ପତ୍ତି କରିବାକୁ ଆଦେଶ ଦେଉଥିଲେ । ଲୋକେ ତାଙ୍କର ନ୍ୟାୟ ବିଚାରରେ ଏପରି ସନ୍ତୁଷ୍ଟ ହୋଇଥିଲେ ଯେ ତାଙ୍କୁ 'ନ୍ୟାୟ ସିଂହ' ଉପାଧି ଦେଇଥିଲେ । ତାଙ୍କର ଗୋଟିଏ ମାତ୍ର ପୁଅ ସମୁଦ୍ରରେ ବୁଡ଼ିମରିବାରୁ ହେନ୍‌ରି ଦୁଃଖରେ ୧୧୩୫ ରେ ମରିଗଲେ ।

ହେନ୍‌ରିଙ୍କ ପରେ ତାଙ୍କ ଭଣଜା ଷ୍ଟିଫେନ୍ ରାଜା ହେଲେ । ସେ ଅତି ଦୁର୍ବଳ ରାଜା ଥିଲେ ଏବଂ ରାଜ୍ୟରେ ଶାନ୍ତି ରଖି ପାରି ନ ଥିଲେ । ତହୁଁ ପ୍ରବଳ ଲୋକମାନେ ଦୁର୍ବଳମାନଙ୍କ ଉପରେ ଏପରି ଅତ୍ୟାଚାର କଲେ ଯେ, ତାହା କହିଲେ ନ ସରେ । କୌଣସି ପୁସ୍ତକରେ ଲେଖା ଅଛି, "ଷ୍ଟିଫେନଙ୍କ ରାଜତ୍ୱରେ ଖ୍ରୀଷ୍ଟ ଓ ତାଙ୍କ ଅନୁଚରମାନେ ଶୋଇଥିଲେ ।" ଏହାର ଅର୍ଥ, ରାଜ୍ୟରେ ଧର୍ମ

କମ୍ପା ଶାନ୍ତି ନ ଥିଲା । ଯେ ଯାହା ପାରିଲା, ସେ ତାହା କଲା । ଷ୍ଟିଫେନ୍ ୧୧୫୪ ରେ ମରନ୍ତେ ଦ୍ୱିତୀୟ ହେନ୍‌ରି ଇଂଲଣ୍ଡର ରାଜା ହେଲେ ।

---

## ହେନ୍ରି ଏନ୍ ଜେଭିନ୍

ହେନ୍ରିଙ୍କ ପିତା କାଉଣ୍ଟ ଜେଫ୍ରେ ଫ୍ରାନ୍‌ସ ଦେଶର ଏଞ୍ଜୋର ଲୋକ ଥିବାରୁ ହେନ୍ରିଙ୍କ ବଂଶକୁ ଏନ୍‌ଜେଭିନ୍ ବଂଶ କହନ୍ତି । ହେନ୍ରି ପିତାଙ୍କଠାରୁ ମେଇନ୍ ଓ ଏଞ୍ଜୋ ଦୁଇଟି ପ୍ରଦେଶ ପାଇଥିଲେ । ହେନ୍ରିଙ୍କ ମାତା ମେଟିଲ୍‌ଡ଼ା ସ୍କଟ୍ ରାଜବଂଶର ଥିଲେ । ମାତାଙ୍କଠାରୁ ହେନ୍ରି ଇଂଲଣ୍ଡ, ନର୍ମାଣ୍ଡି ଓ ପଇଟୁ ପାଇଥିଲେ । ସେ ନିଜ ଭାର୍ଯ୍ୟାଙ୍କଠାରୁ ଏକୁଇଟେନ୍ ଓ ଗେସ୍କନି ପାଇଥିଲେ । ତାଙ୍କ ପୁଅର ଭାର୍ଯ୍ୟା ଶାଶୁଘରକୁ ଆସିବାବେଳେ ଯୌତୁକସ୍ୱରୂପ ବ୍ରିଟାନି ଆଣିଥିଲେ । ଏହିପରି ହେନ୍ରି ଇଂଲଣ୍ଡ ଓ ଫ୍ରାନ୍‌ସର ଅନେକ ଗୁଡ଼ିଏ ଅଂଶ ଉପରେ ମାଲିକ ହୋଇଥିଲେ । ଫ୍ରାନ୍‌ସରେ ତାଙ୍କର ଯେତେ ରାଜ୍ୟ ଥିଲା, ଫରାସୀ ରାଜାଙ୍କର ତେତେ ନ ଥିଲା । ଏହା ଫ୍ରାନ୍‌ସ ଓ ଇଂଲଣ୍ଡ ମଧ୍ୟରେ ଏକ କଳହର କାରଣ ହୋଇ ରହିଲା ।

ହେନ୍ରି ଏହି ବିଶାଳ ରାଜ୍ୟରେ ସୁଶାସନ ସ୍ଥାପନ କରିବେ ବୋଲି ବହୁତ ପରିଶ୍ରମ କଲେ । ଷ୍ଟିଫେନଙ୍କ ରାଜତ୍ୱରେ ଇଂଲଣ୍ଡର ଅବସ୍ଥା ଶୋଚନୀୟ ହୋଇ-



ଥିଲା । ବେରନ୍‌ମାନେ ଗୁଡ଼ିଏ ଦୁର୍ଗ ନିର୍ମାଣ କରି ଦେଶରେ ନାନା ଅତ୍ୟାଚାର କରୁଥିଲେ

ଏବଂ ନିଜ ଦୁର୍ଗ ଭିତରେ ରହି କାହାକୁ ମାନୁ ନ ଥିଲେ । ହେନ୍ରି ସେମାନଙ୍କର ଏହିପରି ୩୭୫ ଗୋଟି ଦୁର୍ଗ ଭାଙ୍ଗି ପକାଇଲେ । ସେମାନେ ଦରମା ଦେଇ ଯେଉଁ ସୈନ୍ୟ ରଖିଥିଲେ, ସେହି ସୈନ୍ୟମାନଙ୍କୁ ତଡ଼ିଦେବା ସକାଶେ ସେମାନଙ୍କୁ ବାଧ୍ୟ କଲେ । ବେରନ୍‌ମାନେ ଯେଉଁ ଭୂମି ବୃତ୍ତି ପାଇଥିଲେ, ତହିଁର ପରିବର୍ତ୍ତରେ ରାଜାଙ୍କୁ ସୈନ୍ୟ ଯୋଗାଉଥିଲେ । ସେମାନେ ଯଦି ନିଜେ ବିଦ୍ରୋହ କରନ୍ତି ଏବଂ ରାଜାଙ୍କୁ ସୈନ୍ୟ ନ ଯୋଗାନ୍ତି, ତାହାହେଲେ ରାଜା ନିଜେ ସୈନ୍ୟ ପାଇବେ ନାହିଁ । ଏପରି ଅବସ୍ଥା ଦେଖି ହେନ୍ରି ବ୍ୟବସ୍ଥା କଲେ ଯେ ବେରନମାନେ ସୈନ୍ୟ ଯୋଗାଇବା ପରିବର୍ତ୍ତିରେ ରାଜାଙ୍କୁ କର ଦେଇ ପାରିବେ । ବେରନ୍‌ମାନଙ୍କ ମଧ୍ୟରୁ କେତେକ କର ଦେବାକୁ ସହଜ ମନେ କଲେ । ହେନ୍ରି ସେହି ଠଙ୍କାରୁ ଦରମା ଦେଇ ନିଜେ ସୈନ୍ୟ ରଖିଲେ । ଏଥିରେ ଇଂଲଣ୍ଡର ଜାତୀୟ ସାମରିକ ସେନାର ମୂଳଭିତ୍ତି ସ୍ଥାପିତ ହେଲା ଏବଂ ସାମନ୍ତପ୍ରଥାର କୁପରିଣାମ ଓ ବେରନମାନ୍‌ଙ୍କର କ୍ଷମତା ହ୍ରାସ ହେଲା ।

ପୂର୍ବେ କେହି କୌଣସି ଅଭିଯୋଗ କଲେ, ମୁଦେଇ ମୁଦାଲା ଦୁହେଁ ଲଢ଼େଇ କରୁଥିଲେ । ଲଢ଼େଇରେ ଯେ ଜିଣୁଥିଲା, ମକଦ୍ଦମାରେ ମଧ୍ୟ ସେ ଜିଣୁଥିଲା । ହେନ୍ରି ବୁଝି ପାରିଲେ, ଏଥିରେ ଠିକ୍ ବିଚାର ହେଉ ନ ଥିଲା । ବଳିଷ୍ଠ ବ୍ୟକ୍ତି ଦୁର୍ବଳ ବ୍ୟକ୍ତିଙ୍କୁ ତ ସବୁବେଳେ ଲଢ଼େଇରେ ହରାଇବା କଥା, କିନ୍ତୁ ସାଧାରଣତଃ ବଳିଷ୍ଠ ବ୍ୟକ୍ତି ଅଧିକାଂଶ ସମୟରେ ଦୋଷ କରିଥାଏ । ଦୁର୍ବଳ ବ୍ୟକ୍ତି ଦୋଷୀ ହେଉ ବା ନିର୍ଦ୍ଦୋଷ ହେଉ, ସବୁ ମକଦ୍ଦମାରେ ହାରିବ । ଏଥିପାଇଁ ହେନ୍ରି ୧୧୭୬ ରେ ଗୋଟିଏ ନୂଆ ବ୍ୟବସ୍ଥା

କଲେ । ସେ ନିଜ ବିଗ୍ଭରପତିମାନଙ୍କୁ ମଫସଲମାନଙ୍କରେ ବୁଲି ବୁଲି ମକଦ୍ଦମା ବିଗ୍ଭର କରିବା ନିମନ୍ତେ ପଠାଇଲେ । ସେମାନେ ପ୍ରତି ମକଦ୍ଦମା ବିଗ୍ଭର କରିବାବେଳେ କେତେ ଜଣ ଭଲଲୋକଙ୍କ ଡାକନ୍ତି ଏବଂ ସେମାନଙ୍କୁ ସତ କହିବେ ବୋଲି ପ୍ରଥମେ ଶପଥ କରାନ୍ତି । ତାପରେ ସେମାନଙ୍କଠାରୁ ସାକ୍ଷ୍ୟ ନେଇ ମକଦ୍ଦମା ନିଷ୍ପତ୍ତି କରନ୍ତି ।

ହେନ୍‌ରିଙ୍କ ଆଗରୁ ଗିର୍ଜାର ଯାଜକମାନେ କୌଣସି ଦୋଷ କଲେ ମଧ୍ୟ ରାଜାଙ୍କ ବିଗ୍ଭରପତିମାନେ ସେମାନଙ୍କର ଦୋଷ ବିଗ୍ଭର କରି ପାରୁ ନ ଥିଲେ । ଯଦି କେହି ଯାଜକ କୌଣସି ଦୋଷ କରେ ତାହାର ଦୋଷ ବିଗ୍ଭର କରିବା ନିମନ୍ତେ ଗିର୍ଜାମାନଙ୍କ ପକ୍ଷରୁ ଗୋଟିଏ ଅଦାଲତ ଥାଏ । ଯାଜକମାନଙ୍କ ମଧ୍ୟରୁ କେହି କେହି ଏହି ଅଦାଲତର ବିଗ୍ଭରପତି ଥାଆନ୍ତି । ସେମାନେ ଚୋରି କରନ୍ତୁ, ମନୁଷ୍ୟ ମାରନ୍ତୁ ବା ଯାହା କିଛି ଅପରାଧ କରନ୍ତୁ, ଜଣେ ଯାଜକର ଦୋଷ ଆଉ ଜଣେ ଯାଜକ ବିଗ୍ଭର କରିବ । ସେପରି ସ୍ଥଳରେ ଏକା ବ୍ୟବସାୟର ଲୋକେ ଦୋଷୀକୁ ଉଚିତ ଦଣ୍ଡ ଦେଉ ନ ଥିଲା । ଯାଜକମାନେ ବଡ଼ ଦୋଷ କଲେ ମଧ୍ୟ ଠିକ୍ ରୂପେ ଦଣ୍ଡ ପାଉ ନ ଥିଲେ । ସେକଥା ଜାଣି ପାରି ହେନ୍‌ରି ସ୍ଥିର କରିଦେଲେ ଯେ ଯାଜକମାନେ ଦୋଷ କଲେ, ରାଜାଙ୍କ ବିଗ୍ଭରପତିମାନେ ସେମାନଙ୍କର ଦୋଷର ବିଗ୍ଭର କରିବେ । ଏଥିରେ କେଣ୍ଟରବେରିର ପ୍ରଧାନ ଧର୍ମଯାଜକ ଭାରି ଆପତ୍ତି କଲେ ।

ଟମାସ୍ ବେକେଟ୍ ବୋଲି ଗୋଟିଏ ଭଦ୍ର ଘରର ପିଲା ଥିଲା । ହେନ୍‌ରି ପିଲା ଥିବାବେଳେ ସେହି ପିଲାସଙ୍ଗେ ପାଠ ପଢ଼ିଥିଲେ, ତା ସଙ୍ଗେ ଖେଳାବୁଲା କରୁଥିଲେ । ସେ ତାଙ୍କର ଖୁବ୍ ସାଙ୍ଗ ଥିଲେ ।

ବେକେଟ୍ ପାଠସାଠ ପଢ଼ି ବୁଦ୍ଧିମାନ ହେଲେ । ହେନ୍‌ରି ଯେତେବେଳେ ରାଜା ହେଲେ, ସେହି ପିଲାଦିନର ସାଙ୍ଗ ବେକେଟଙ୍କୁ ନିଜର ପ୍ରଧାନ ମନ୍ତ୍ରୀ କଲେ । ଗିର୍ଜାଗୁଡ଼ିକୁ ହେନ୍‌ରି ନିଜର ଅଧୀନ କରିବେ ବୋଲି ଭାବିଥିଲେ, କାରଣ ସେତେବେଳେ ଯାଜକମାନେ ରାଜାଙ୍କ କଥା ଠିକ୍ ରୂପେ ମାନୁ ନ ଥିଲେ । ବେକେଟ୍ କେଣ୍ଟରବେରିର ପ୍ରଧାନ ଧର୍ମଯାଜକ ହେଲେ ହେନ୍‌ରିଙ୍କୁ ସାହାଯ୍ୟ କରିବେ, ଗିର୍ଜାଗୁଡ଼ିକୁ ତାଙ୍କ କଥା ମାନିବାରେ ବାଧ୍ୟ କରିବେ । ଏହି ଆଶା କରି ହେନ୍‌ରି ବେକେଟଙ୍କୁ କେଣ୍ଟାର୍‌ବେରିର ପ୍ରଧାନ ଧର୍ମଯାଜକପଦରେ ନିଯୁକ୍ତ କଲେ । ବେକେଟ୍ ଯେତେବେଳେ ପ୍ରଧାନ ଧର୍ମଯାଜକ ହେଲେ, ତାଙ୍କ ମନ ବଦଳିଗଲା । ସେ ମନେକଲେ ଗିର୍ଜାର ଯେତେ ଅଧିକାର ଅଛି, ସେଗୁଡ଼ିକ ରକ୍ଷା କରିବା ତାଙ୍କର ଧର୍ମ ଓ କର୍ତ୍ତବ୍ୟ ।

ଯାଜକମାନଙ୍କ ଦୋଷ ରାଜାଙ୍କ ବିଚାରପତିମାନେ ବିଚାର କରିବେ ବୋଲି ହେନ୍‌ରି ଯେତେବେଳେ ଘୋଷଣା କଲେ, ବେକେଟ୍ ମନେ କଲେ, ରାଜା ଅଯଥା ଗିର୍ଜାର ଅଧିକାରରେ ହସ୍ତକ୍ଷେପ କରୁଅଛନ୍ତି । ସେ ତହିଁର ଘୋର ପ୍ରତିବାଦ କଲେ । ଖାଲି ସେତିକି ନୁହେ, ପ୍ରତି କଥାରେ ରାଜାଙ୍କୁ ବାଧା ଦେଲେ । ଏଥିରେ ହେନ୍‌ରି ଦିନେ କ୍ରୋଧରେ ଅନ୍ଧ ହୋଇଗଲେ । ସେ କହିଲେ, "ଏହି ଅପଦାର୍ଥ ବେକେଟ୍ ହାତରୁ ମୋତେ ରକ୍ଷା କରିବାକୁ କଣ ମୋର କେହି ଲୋକ ନାହିଁ ?" ଚାରି ଜଣ ରାଜଭକ୍ତ କର୍ମଚାରୀ ଶୀଘ୍ର ବାହାରି ପଡ଼ିଲେ ଏବଂ ବେକେଟଙ୍କ ଘରକୁ ଯାଇ ତାଙ୍କ ଦରଜାରେ ଜୋରରେ ଆଘାତ କରି ଡାକ ପକାଇଲେ, "ରାଜଦ୍ରୋହୀ ଠମାସ ବେକେଟ୍ କାହିଁ ?" ବେକେଟ୍ ଘରୁ ବାହାରି ପଡ଼ି କହିଲେ, "ମୁଁ ବେକେଟ୍ । ମୁଁ ରାଜଦ୍ରୋହୀ ନୁହେ । ମୁଁ ପ୍ରଧାନ ଧର୍ମଯାଜକ, ଈଶ୍ୱରଙ୍କ

ପୁରୋହିତ ।" କର୍ମଗୁସ୍ତମାନେ ଗୋଟିଏ ଖଣ୍ଡାର ଚୋଟରେ ତାଙ୍କ ସଙ୍ଗେ୨ ଶେଷ କରିଦେଲେ ।

ହେନ୍‌ରି ମନେ କଲେ, ତାଙ୍କର କଣ୍ଟକ ଦୂର ହେଲା, ଓ ସେ ଜିଣିଲେ । କିନ୍ତୁ ପ୍ରକୃତରେ ସେ ଏହିଠାରୁ ହାରିବାକୁ ଆରମ୍ଭ କଲେ । ଲୋକେ ମନେ କଲେ, ବେକେଟ୍ ଧର୍ମ ସକାଶେ ପ୍ରାଣ ଦେଇଛନ୍ତି । ସମସ୍ତେ ତାଙ୍କ ପାଇଁ ହାୟ, ହାୟ କଲେ । ସମସ୍ତେ ତାଙ୍କର ପ୍ରଶଂସା କଲେ । ତେଣେ ରୋମରେ ଆଉ ପୋପ୍ ଘୋଷଣା କଲେ, ବେକେଟ୍ ଧର୍ମ ସକାଶେ ପ୍ରାଣ ଦେଇଛନ୍ତି, ସେ ଜଣେ ଶହୀଦ୍ (ମାର୍ଟିର) । ଯେଉଁଠାରେ ବେକେଟଙ୍କର ଶବକୁ ସମାଧି ଦିଆ ହୋଇଥିଲା, ସେହି ସ୍ଥାନ ଏକ ତୀର୍ଥରେ ପରିଣତ ହେଲା । ପୁଣ୍ୟ ଅର୍ଜିବେ ବୋଲି ଲୋକେ ସେ ସ୍ଥାନ ଦେଖିବାକୁ ଗଲେ ।



ବେକେଟଙ୍କ ସମାଧି

ହେନ୍‌ରି ନିଜ ଭୁଲ ବୁଝି ପାରିଲେ । ସେ ହାରିଲେ । ସେ ଥରେ ଘୋଡ଼ାରେ ଚଢ଼ି କେଣ୍ଟାର୍‌ବେରିକୁ ଗଲେ । ବେକେଟଙ୍କ ସମାଧି ଆଡୁର

ମାରିଲେ ବୋଲି ଅଛି, ସେ ଘୋଡ଼ାରୁ ଓହ୍ଲାଇ ପଡ଼ିଲେ ଏବଂ ପାଦରେ ଚାଲି ଚାଲି ସେଠାକୁ ଗଲେ । ସେଠା ନିଜେ ଦର୍ଶନ କଲେ ଏବଂ ଆଣ୍ଠୁ ମାଡ଼ି ବସି ସେଠାରେ ପ୍ରାର୍ଥନା କଲେ । ଯାଜକମାନେ ତାଙ୍କ ଖୋଲା ପିଠିରେ ବେତରେ ମାଡ଼ଦେଲେ ।

ହେନ୍ରି ଧର୍ମଯାଜକମାନଙ୍କ ଦୋଷର ବିଚାର ସକାଶେ ନିଜ ଅଦାଲତକୁ ଆଣି ପାରିଲେ ନାହିଁ । ଏହାପରେ ଯାଜକମାନେ ସେହି କ୍ଷମତା ଅନୁନ୍ୟ ଚାରି ଶହ ବର୍ଷ ନିଜ ହାତରେ ରଖିଥିଲେ ।

## (୯)

## କ୍ରସେଡ୍ ଯୁଦ୍ଧ

ହେନ୍ରିଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପ୍ରଥମ ରିଚାର୍ଡ ୧୧୮୯ ଖ୍ରୀ:ଅ: ରେ ରାଜା ହେଲେ । ତାଙ୍କର ସାହସ ସକାଶେ ପ୍ରଜାମାନେ ତାଙ୍କୁ "ପୁରୁଷସିଂହ ରିଚାର୍ଡ" ବା ସିଂହହୃଦୟ ରିଚାର୍ଡ ବୋଲି କହୁଥିଲେ । ସେ ଦଶବର୍ଷ ରାଜୁତି କରିଥିଲେ, କିନ୍ତୁ ସେହି ଦଶବର୍ଷ ମଧ୍ୟରୁ କେବଳ ସାତଟି ମାସ ଇଂଲଣ୍ଡରେ ରହିଥିଲେ । ବାକୀ କାଳ ସେ ବିଦେଶରେ ରହି ଯୁଦ୍ଧ କରିବାରେ କଟାଇଥିଲେ ।

ତୁମ୍ଭେମାନେ ଇଉରୋପିଅର ମାନଚିତ୍ର ଦେଖ । ସେହି ମାନଚିତ୍ରରୁ ପାଲେଷ୍ଟାଇନ୍ ଓ ଜେରୁଜେଲମ୍ ଖୋଜି ବାହାର କର । ଏହା ଇଂଲଣ୍ଡ ଓ ଫ୍ରାନ୍ସଠାରୁ ଅନେକ ଦୂରରେ ଅଛି । ଯୀଶୁଖ୍ରୀଷ୍ଟ ଖ୍ରୀଷ୍ଟାନ୍ ଧର୍ମ ପ୍ରଚାର କରିଥିଲେ । ସେ ଧର୍ମ ପ୍ରଚାର





ରିଚ୍ଚର୍ଡ ଓ ତାଙ୍କ ରାଣୀ

ଏହିବେଳେ କେତେକ ଲୋକ ତାଙ୍କ ପ୍ରଚାର କଥା ଶୁଣି ଖୁବ୍ ଚିଡ଼ିଗଲେ । ରାଜାଜ୍ଞାରେ ତାଙ୍କୁ ଗୋଟିଏ ଖୁଣ୍ଟରେ ବାନ୍ଧି ତାଙ୍କ ଦେହଯାକ କଣ୍ଟା ବାଡ଼େଇ ଦିଆଗଲା । ସେହି ଅବସ୍ଥାରେ ଯୀଶୁ ପ୍ରାଣତ୍ୟାଗ କଲେ । କିନ୍ତୁ ମରିବା ପର୍ଯ୍ୟନ୍ତ ସେ କାହାରିକୁ ନିନ୍ଦା ନ କରି କେବଳ ଭଗବାନଙ୍କୁ ପ୍ରାର୍ଥନା କରି କହୁଥାନ୍ତି, "ପ୍ରଭୋ, ଏମାନଙ୍କୁ ଭଲ ବୁଦ୍ଧି ଦିଅ । ଏମାନେ କଣ ଭୁଲ କରୁଛନ୍ତି, ତାହା ନିଜେ ବୁଝି ପାରୁ ନାହାନ୍ତି, ଏମାନଙ୍କର ମଙ୍ଗଳ କର ।"

. ଖ୍ରୀଷ୍ଟ ଏତେ କଷ୍ଟ ପାଇ ପ୍ରାଣତ୍ୟାଗ କରିଥିଲେହେଁ ମରିବା ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କୁ କଷ୍ଟ ଦେଇଥିବା ଲୋକଙ୍କର ସେ ଅମଙ୍ଗଳ ପାଞ୍ଚି ନ ଥିଲେ । ଅଧିକନ୍ତୁ ଓଲଟି ସେମାନଙ୍କୁ ଭଲ ବୁଦ୍ଧି ଦେବା ସକାଶେ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ଏଥିରେ ଲୋକଙ୍କର ମନ ବଦଳିଗଲା । ସମସ୍ତେ ତାଙ୍କୁ ପରେ ଈଶ୍ୱରଙ୍କ ମୁକ୍ତିଦାତା ବୋଲି ଜାଣି ପାରିଲେ । ତହୁଁ ତାଙ୍କ ଯୀଶୁଙ୍କ କହିଥିବା ଧର୍ମକଥା ଶୁଣିଲେ । ସେ ସବୁ ବୁଝିଲେ, ମାନିଲେ । ଯେଉଁଠାରେ ସେ କାଠରେ କଣ୍ଟା ଫୋଡ଼ାଯାଇ ମରିଥିଲେ, ସେ ସ୍ଥାନକୁ ତାଙ୍କ ଭକ୍ତମାନେ ଏକ ତୀର୍ଥଭୂମି ବୋଲି ସ୍ଥିର କଲେ । ପୁଣ୍ୟ ହେବ ବୋଲି ସେ ସ୍ଥାନ ଦର୍ଶନ କରିବାକୁ ଗଲେ । ଯେଉଁମାନେ ଖ୍ରୀଷ୍ଟଙ୍କ ଧର୍ମ ମାନନ୍ତି, ସେମାନଙ୍କୁ ଖ୍ରୀଷ୍ଟାନ୍ କହନ୍ତି । ଖ୍ରୀଷ୍ଟାନ୍‌ମାନେ ପାଲେଷ୍ଟାଇନର ଜେରୁଜେଲମରେ ଥିବା ଖ୍ରୀଷ୍ଟଙ୍କର ସେହି ସମାଧି ସ୍ଥାନକୁ ତୀର୍ଥରୂପେ ଯାଆନ୍ତି ।



[illegible]

ଆରବ ଖଲିଫାର ରାଜା ଥିବାବେଳେ ଖ୍ରୀଷ୍ଟାନ୍‌ମାନଙ୍କର ଧର୍ମମତ ଯେଉଁ ଧରଣର ଥିଲା, ବର୍ତ୍ତମାନ ତାହା ବଦଳି ଗଲାଣି । ସେତେବେଳେ ଜେରୁଜେଲମ୍ ସେମାନଙ୍କର ଅତି ପବିତ୍ର ସ୍ଥାନ ଥିଲା । ଖ୍ରୀଷ୍ଟଙ୍କ ସମାଧି ସ୍ଥାନକୁ ସେମାନେ ଏତେ ଭକ୍ତି କରୁଥିଲେ

ଯେ ସେହି ଭକ୍ତ ଅଗରେ ଆଉ ସବୁ କାର୍ଯ୍ୟକୁ ତୁଚ୍ଛ ଜ୍ଞାନ କରୁଥିଲେ । ଯେଉଁ ଲୋକ ଜେରୁଜେଲମ୍ ତୀର୍ଥ ଦର୍ଶନ କରି ପାରୁଥିଲା, ଲୋକେ ତାକୁ ପୁଣ୍ୟାତ୍ମା ବୋଲି ବିଗ୍ଭର କରୁଥିଲେ । 'ପାଲେଷ୍ଟାଇନ୍ ସେମାନଙ୍କର ସବୁଠୁଁ ବଡ଼ ତୀର୍ଥଭୂମି । ଇଉରୋପରୁ ହଜାର ହଜାର ଯାତ୍ରୀ ପ୍ରତ୍ୟହ ସେଠାକୁ ଯାଉଥିଲେ । ଭକ୍ତମାନଙ୍କର ତୀର୍ଥ ଦେଖିବା ଇଚ୍ଛା ଏତେ ପ୍ରବଳ ଥିଲା ଯେ ତାହାଯୋଗୁଁ ସେମାନଙ୍କୁ ଭୋକ, ଶୋଷ, ରାସ୍ତାକଷ୍ଟ, ଦସ୍ୟୁଭୟ ପ୍ରଭୃତି କିଛି ବାଧୁ ନ ଥିଲା । ଏପରି ଲୋକ ତୀର୍ଥରୁ ଫେରିଲେ, ତାଠୁଁ ସେ ଦେଶର କାହାଣୀ ଶୁଣିବା ଲାଗି ଲୋକେ ଶହ ଶହ ସଂଖ୍ୟାରେଆସି ତାକୁ ଘେରି ବସି ଯାଉଥିଲେ । ସେଥିପାଇଁ ତାକୁ କାହାଣୀ କହି ଶୁଣାଇବା ନିମନ୍ତେ ଖାଇବା ପିଇବାକୁ ଡର ହେଉ ନ ଥିଲା ।

କିଛିଦିନ ପରେ ପାଲେଷ୍ଟାଇନ୍ ମୁସଲମାନମାନଙ୍କ ହାତରେ ପଡ଼ିଲା । ସେମାନେ ପ୍ରଥମେ ପ୍ରଥମେ ଖ୍ରୀଷ୍ଟାନ୍ ତୀର୍ଥଯାତ୍ରୀମାନଙ୍କୁ କୌଣସି ପ୍ରକାର ବାଧା ଦେଲେ ନାହିଁ; କିନ୍ତୁ ତୁରସ୍କ ଦେଶର ମୁସଲମାନମାନେ ଯେତେବେଳେ ପାଲେଷ୍ଟାଇନ୍ ଅଧିକାର କଲେ, ସେମାନେ ଖ୍ରୀଷ୍ଟାନ୍ ଯାତ୍ରୀମାନଙ୍କ ଉପରେ ଅତ୍ୟାଗ୍ଭର ଆରମ୍ଭ କଲେ ।

ପିଟର ନାମରେ ଜଣେ ଧର୍ମଯାଜକ ଉପରେ ତୁର୍କୀମାନେ ବିଶେଷ ଅତ୍ୟାଗ୍ଭର କରିବାରୁ ସେ ଇୟୁରୋପ ଯାକ ବୁଲି ସମସ୍ତଙ୍କୁ ନିଜ ଦେହର କ୍ଷତଚିହ୍ନମାନ ଦେଖାଇଲେ ଓ ସମସ୍ତଙ୍କୁ ତୁର୍କୀମାନଙ୍କର ଅତ୍ୟାଗ୍ଭର କଥା କହିଲେ । ସେମାନଙ୍କ ସଙ୍ଗେ ଯୁଦ୍ଧ କରିବା ନିମନ୍ତେ ଇୟୁରୋପଯାକ ବୁଲି ସବୁ ଖ୍ରୀଷ୍ଟାନ୍‌ମାନଙ୍କୁ ଉତ୍ତେଜିତ କଲେ । ତାଙ୍କ କଥା ଶୁଣି ଖ୍ରୀଷ୍ଟଧର୍ମର ପ୍ରଧାନ ଧର୍ମଯାଜକ ପୋପ ମଧ୍ୟ ଭାରି ଉତ୍ତେଜିତ ହେଲେ । ଇୟୁରୋପର ରାଜାମାନଙ୍କୁ

ମୁସଲ୍ମାନମାନଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ପୋପ୍ ଆଦେଶ ଦେଲେ ଏବଂ ପ୍ରବର୍ତ୍ତାଇଲେ ।

ଯେଉଁ କାଠ ଦେହରେ ଖ୍ରୀଷ୍ଟଙ୍କୁ ଲୋକେ କଣ୍ଟା ବାଡ଼େଇ ମାରି ଦେଇଥିଲେ, ତାହାକୁ କ୍ରୁଶ କହନ୍ତି । ସେହି କ୍ରୁଶକୁ ରକ୍ଷା କରିବା ନିମନ୍ତେ ବା ତୁର୍କିଙ୍କ ହାତରୁ ଜେରୁଜେଲମ୍ କାଢ଼ି ନେବା ନିମନ୍ତେ ଇଉରୋପର ସବୁ ଦେଶର ଖ୍ରୀଷ୍ଟାନ୍ ରାଜାମାନେ ଯୁଦ୍ଧ କଲେ । ଏହି ଯୁଦ୍ଧକୁ "କ୍ରୁସେଡ୍" ଯୁଦ୍ଧ କହନ୍ତି ।

ଇଂଲଣ୍ଡର ରୁଫସଙ୍କ ରାଜତ୍ୱରେ ପ୍ରଥମ କ୍ରୁସେଡ୍ ହୋଇଥିଲା । ପ୍ରଥମ କ୍ରୁସ୍ ଯୁଦ୍ଧରେ ଖ୍ରୀଷ୍ଟାନ୍ମାନେ ତୁର୍କିମାନଙ୍କ ହାତରୁ



ସେହି ସମୟର 'ନାଇଟ'ର ଛବି

ଜେରୁଜେଲମ୍ ଉଦ୍ଧାର କରି ସେଠାରେ ଜଣେ ଖ୍ରୀଷ୍ଟାନ୍ ରାଜାଙ୍କୁ ବସାଇଥିଲେ । ଏହାର ୮୮ ବର୍ଷ ପରେ ସାଲଡିନ୍ ବୋଲି ଜଣେ ବଳିଷ୍ଠ ତୁରସ୍କ ଦେଶର ରାଜା ଜେରୁଜେଲେମ୍ ପୁଣି ଛଡ଼ାଇ ନେଲେ ଏବଂ ଖ୍ରୀଷ୍ଟାନ୍ ରାଜାଙ୍କୁ ସେଠାରୁ ତଡ଼ିଦେଲେ ।

ରିଚାର୍ଡ଼ଙ୍କ ରାଜତ୍ୱକାଳରେ ତୃତୀୟ କ୍ରୁସ୍ଯୁଦ୍ଧ ହେଲା । ଏଥିରେ ଫ୍ରାନ୍ସ, ଜର୍ମାନୀ, ଇଂଲଣ୍ଡ, ଅଷ୍ଟ୍ରିୟା ପ୍ରଭୃତି ଦେଶର ରାଜାମାନେ ଯୋଗ ଦେଇଥିଲେ । ଇଉରୋପର କେତେ ରାଜା, କେତେ ବୀର ଯେ ସେହି ଯୁଦ୍ଧକୁ ଯାଇ-ଥିଲେ, ତାହା ହିସାବ କରି ହେବ ନାହିଁ । ସେମାନଙ୍କ ଭିତରେ ଇଂଲଣ୍ଡର ରାଜା ରିଚାର୍ଡ଼ ଅଧିକ ସାହସୀ ଓ ଭଲ ସେନାପତି ଥିଲେ ।

ପୂର୍ବକାଳରେ ଭାରତବର୍ଷର କୌଣସି କୌଣସି ସ୍ଥାନର ପିଲ୍ଲମାନେ ଦୁଷ୍ଟ ହେଲେ, ମାଆମାନେ 'ବର୍ଗୀ ଅସୁଛୁ' 'ତିମୁର ଅସୁଛୁ' କହି ସେମାନଙ୍କୁ ଭୟ ଦେଖାଇ ଚୁପ କରନ୍ତି । ସାରସେନ୍ ଦେଶରେ (ତୁରସ୍କରେ) ମାଆମାନେ ସେହିପରି ଦୁଷ୍ଟ ଟୋକାଙ୍କୁ 'ଇଂଲଣ୍ଡର ରିଚାର୍ଡ ଅସୁଛୁ' ବୋଲି କହି ସେତେବେଳେ ଡରାଇ ଚୁପ କରୁଥିଲେ । ରିଚାର୍ଡଙ୍କ ସଙ୍ଗେ ଯୁଦ୍ଧକୁ ଅନ୍ୟ ଯେଉଁ ସେନାପତିମାନେ ଯାଇଥିଲେ, ତାଙ୍କର ଏଡ଼େ ବଡ଼ ଖ୍ୟାତି ସହି ପାରିଲେ ନାହିଁ । କେତେକ ତାଙ୍କୁ ଛାଡ଼ି ଯୁଦ୍ଧକ୍ଷେତ୍ରରୁ ସୈନ୍ୟ ଘେନି ପଳାଇଗଲେ ।

ରିଚାର୍ଡ ଅପଣା ସୈନ୍ୟ ଘେନି ଅନେକ ଦିନ ଯୁଦ୍ଧ କରି ଜେରୁଜେଲମରେ ପହଞ୍ଚିଲେ ସତ, କିନ୍ତୁ ସେହି ନଗରଟି ଦଖଲ କରି ପାରିଲେ ନାହିଁ । ସେ ବାଧ ହୋଇ ସାଲାଡିନଙ୍କ ସଙ୍ଗେ ସନ୍ଧି କଲେ । ଏହି ସନ୍ଧି ଫଳରେ ଖ୍ରୀଷ୍ଟିଆନ୍ ତୀର୍ଥଯାତ୍ରୀମାନଙ୍କ ଉପରେ ସାଲାଡିନ୍ ଓ ତାଙ୍କ ଲୋକେ କୌଣସି ପ୍ରକାର ଅତ୍ୟାଚାର କରିବେ ନାହିଁ କିମ୍ବା ସେମାନଙ୍କ ଯିବା ଆସିବାରେ କେହି କିଛି ବାଧା ଦେବେ ନାହିଁ ବୋଲି ଅଙ୍ଗୀକାର କଲେ । ତଥାପି ରିଚାର୍ଡଙ୍କ ମନରେ ଭାରି ଦୁଃଖ ହେଲା । ସେ ଭାବିଲେ, "ମୁଁ ଆଉ କି ବୀର ? ମୁଁ ତ ଏହି ପବିତ୍ର ନଗର ଅଧିକାର କରିପାରିଲି ନାହିଁ । ମୁଁ ଯଦି ପରାଧୀନ ଧର୍ମଭୂମିକୁ ଉଦ୍ଧାର କରି ନ ପାରିଲି, ତେବେ ମୁଁ ତାହା ଦର୍ଶନ କରିବାର ଉପଯୁକ୍ତ ପାତ୍ର ନୁହେ । ସେ ତହୁଁ ଜେରୁଜେଲମ୍ ନଗର ଦର୍ଶନ କଲେ ନାହିଁ । ସେଠାରୁ ଫେରି ଆସିଲେ । ବାଟରେ ତାଙ୍କୁ ଜଣେ ଶତ୍ରୁ-ରାଜା ବନ୍ଦୀ କରିନେଲେ । ଇଂରେଜମାନେ ସେହି ଶତ୍ରୁ ରାଜାଙ୍କୁ ବହୁତ ଟଙ୍କା ଦେଇ ରିଚାର୍ଡଙ୍କୁ ମୁକ୍ତ କରି ଆଣିଲେ । ଅତଃପର ଫ୍ରାନ୍ସ ଦେଶରେ ସେହି ଶତ୍ରୁରାଜାଙ୍କ ସଙ୍ଗେ ଯୁଦ୍ଧ କରିବାବେଳେ ରିଚାର୍ଡ ୧୧୯୯ରେ ପ୍ରାଣତ୍ୟାଗ କଲେ ।

---

(୧୦)

# ଜନ୍

ରିଚର୍ଡ଼ଙ୍କ ପରେ ତାଙ୍କ ଭାଇ ଜନ୍ ରାଜା ହେଲେ । ରିଚର୍ଡ଼ଙ୍କ ଆର୍ଥର୍ ବୋଲି ଏକ ବାର ବର୍ଷର ପୁଅ ଥିଲା । ବଡ଼ ହେଲେ ସେ ସିଂହାସନ ଦାବି କରିବ ବୋଲି ଜନ୍ ତାହାକୁ ନିଷ୍ଠୁର ଭାବରେ ମାରି ପକାଇ ଥିଲେ । ଏଥିରୁ ବୁଝାପଡ଼ିବ ଯେ ଜନ୍ କପଟ ଭୀରୁ ଓ ଚରିତ୍ରହୀନ ଲୋକ ଥିଲେ ।



ଜନ୍

ଫ୍ରାନ୍ସର ରାଜା ବୁଝି ପାରିଲେ, ଜନ୍ ଭୀରୁ-ଲୋକ । ତହୁଁ ଫ୍ରାନ୍ସରେ ଇଂରେଜମାନଙ୍କର ଯେତେ ରାଜ୍ୟ ଥିଲା, ସେ ସବୁ ସେ ଛଡ଼ାଇ ନେଇଗଲେ । ଜନ୍ ତାହା ଜାଣି ଶୁଣି ମଧ୍ୟ ନୀରବ ରହିଲେ । ଇଂରେଜ ଜାତି ଏଥିରେ ଜନଙ୍କ ଉପରେ ଭାରି ଚିଡ଼ିଗଲେ ।

କେଣ୍ଟାର୍‌ବେରିର ପ୍ରଧାନ ଯାଜକ ମରିଯିବାରୁ ପୁରୋହିତ ଓ ସନ୍ନ୍ୟାସୀମାନେ ଜଣଙ୍କୁ ବାଛି ପ୍ରଧାନ ଯାଜକ କଲେ । ଜନ୍ ସେଥିରେ ରାଜି ନ ହୋଇ ଅନ୍ୟ ଜଣଙ୍କୁ ବାଛିଲେ । ପୋପଙ୍କ କାନକୁ କଥା ଗଲା । ପୋପ୍ ଜଣେ ଉପଯୁକ୍ତ ଲୋକଙ୍କୁ ପ୍ରଧାନ ଯାଜକ ନିଯୁକ୍ତ କରି ପଠାଇଦେଲେ । ଜନ୍ ତାଙ୍କୁ ଇଂଲଣ୍ଡ ଭିତରକୁ ପଶିବାକୁ ଦେଲେ ନାହିଁ । ପୋପ୍ ଘୋଷଣା କରି ଖ୍ରୀଷ୍ଟାନ୍‌ଧର୍ମର ସବୁ ଶୁଭକାର୍ଯ୍ୟ ଉପଲକ୍ଷରେ ଉପାସନା ଇଂଲଣ୍ଡରେ

ବନ୍ଦ କରିଦେଲେ । ଫଳରେ ଉପାସନା, ବିବାହ, ଶବସଂସ୍କାର ପ୍ରଭୃତି ସବୁ କାମ ବନ୍ଦ ରହିଲା । ଲୋକେ ଭାରି ଅସୁବିଧା ଭୋଗ କଲେ । ଜନ୍ କହିଲେ, 'ସେଥିରେ ମୋର କଣ କ୍ଷତି ହେବ ? ପୋପଠୁଁ ଆଉ କିଏ ମୂର୍ଖ ଅଛି ?' ଏକଥା ଶୁଣି ପୋପ୍ ଫ୍ରାନ୍ସର ରାଜାଙ୍କୁ ଇଂଲଣ୍ଡ ଆକ୍ରମଣ କରିବା ସକାଶେ ପଠାଇଲେ । ଜନଙ୍କ ଚକ୍ଷୁ ଫିଟିଲା । ସେ ପୋପଙ୍କ ନିକଟରେ ଶରଣାପନ୍ନ ହେଲେ । ପୋପଙ୍କ ପ୍ରତିନିଧି ଆସିଲାରୁ ଜନ୍ ତାଙ୍କ ପାଦତଳରେ ନିଜ ମୁକୁଟ ରଖିଲେ । ସେ ନିଜକୁ

୨୦



କେଣ୍ଟର୍ ବେରିର ପ୍ରାୟରଙ୍କ ଆସନ ବା ଗାଦି

ପୋପଙ୍କ ସାମନ୍ତ ରାଜା ବୋଲି ସ୍ୱୀକାର କଲେ । ତା ପରେ ଯାଇ ପ୍ରତିନିଧି ଜନଙ୍କ ମୁଣ୍ଡରେ ମୁକୁଟ ପିନ୍ଧାଇଦେଲେ । ଜନ୍ ପ୍ରତିବର୍ଷ ପୋପଙ୍କୁ ଏକହଜାର ମାର୍କ (ମୁଦ୍ରା) କର ଦେଲେ ।

ତେଣିକି ଜନ୍ ନିଜ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଓ କଳି ଆରମ୍ଭ କଲେ । ସେ ମନେ କଲେ, ପ୍ରଜାମାନେ ବିଦ୍ରୋହ



ଜନଙ୍କ ରୌପ୍ୟମୁଦ୍ରା

କଲେ, ପୋପ୍ ତାଙ୍କୁ ସାହାଯ୍ୟ କରିବେ । ପ୍ରଜାମାନେ ତ ତାଙ୍କ ଉପରେ ଆଗରୁ ବିରକ୍ତ ହୋଇ ରହିଥିଲେ । ଜନ୍ ଏବେ ସେମାନଙ୍କ ସଙ୍ଗେ କଳଗୋଳ ଆରମ୍ଭ କଲେ । ପ୍ରଜାମାନେ ଆଉ ସମ୍ଭାଳି ରହି ପାରିଲେ ନାହିଁ । ସମସ୍ତେ ମିଳି ଗୋଟିଏ ସନନ୍ଦର ଗଠା କଲେ । ସେହି ସନନ୍ଦରେ ଦସ୍ତଖତ୍ କରିବା ନିମନ୍ତେ ଜନଙ୍କୁ ବାଧ କଲେ । ୧୨୧୫ ଖ୍ରୀଷ୍ଟାବ୍ଦରେ ଜନ ବାଧ ହୋଇ ସେଥିରେ ସ୍ୱାକ୍ଷର କଲେ । ଏହି ସନନ୍ଦକୁ "ମହାସନନ୍ଦ" (ମାଗ୍ନା କାର୍ଟା) କହନ୍ତି । ଏହାର

ମାଗ୍ନାକାର୍ଟାର ପ୍ରତିଲିପି

ଫଳରେ ଇଂରେଜ ଜାତିର ସାଧାରଣ ଲୋକ କ୍ରମେ ରାଜାଙ୍କ ହାତରୁ ଶାସନ ସମ୍ବନ୍ଧୀୟ ସମସ୍ତ କ୍ଷମତା କାଢ଼ି ନେବାକୁ ସମର୍ଥ ହୋଇଅଛନ୍ତି । ଶାସନ ସମ୍ବନ୍ଧରେ ଏବେ ବ୍ରିଟିଶ୍‌ର ପାର୍ଲିଅମେଣ୍ଟ ମହାସଭା ସର୍ବେସର୍ବା ହୋଇଅଛି । ରାଜା ମହାସଭାର ନିଷ୍ପତ୍ତି ମାନି ଚଳିବାକୁ ବାଧ୍ୟ ହୋଇଅଛନ୍ତି । ଜନଙ୍କ ମୂର୍ଖତା ହେତୁ ସେହି ସମୟରୁ ଇଂରେଜ ରାଜା ସବୁ କ୍ଷମତା ହରାଇଅଛନ୍ତି ।

ଏହି ମହାସନନ୍ଦରେ ୬୩ ଗୋଟି ସର୍ତ୍ତ ଥିଲା । ଗୋଟିଏ ଦୁଇଟା ଏଠାରେ କହିଲେ, ତୁମ୍ଭେମାନେ ବୁଝି ପାରିବ ଯେ ଏହା କିପରି ଇଂରେଜ ଜାତିର ସ୍ୱାଧୀନତାର ମୂଳଭିତ୍ତି ସ୍ଥାପନ କରିଥିଲା ।

(୧) ଦେଶରେ ପ୍ରଚଳିତ ଆଇନ ବିନା ରାଜା କାହାକୁ ଗିରଫଦାର ବା ବନ୍ଦୀ କରି ପାରିବେ ନାହିଁ, କିମ୍ବା କାହାରିକୁ ରାଜ୍ୟରୁ ତଡ଼ି ଦେଇ ପାରିବେ ନାହିଁ ।

(୨) ବେରନ୍ ସଭାର ବିନା ଅନୁମତିରେ ଯେ କୌଣସି ନୂଆ କର ବା ଶୁଳ୍କ ବସାଇ ପାରିବେ ନାହିଁ ।

(୩) ରାଜା ନ୍ୟାୟବିଚାର ବିକି କରି ପାରିବେ ନାହିଁ, କିମ୍ବା କାହାଙ୍କୁ ଅସ୍ୱୀକାର କରି ପାରିବେ ନାହିଁ କିମ୍ବା ତାହି ସକାଶେ ବିଳମ୍ବ କରି ପାରିବେ ନାହିଁ ।

ଜନ୍ ସନନ୍ଦରେ ସ୍ୱାକ୍ଷର କଲେ ସତ୍ୟ କିନ୍ତୁ ତାହା ମାନିବେ ନାହିଁ ବୋଲି ବିଦେଶରୁ ସୈନ୍ୟ ଆଣି ଯୁଦ୍ଧ କରିବାର ବନ୍ଦୋବସ୍ତ କଲେ । ଯାହାହେଉ, ଏକଥା ହେବା ଅଗରୁ, ୧୨୧୬ ଖ୍ରୀ: ଅ: ରେ ହୋଇ ତାଙ୍କର ମୃତ୍ୟୁ ଘଟିଲା । ମହାସନନ୍ଦ ଇଂରେଜ ଜାତିର ମହାଅଧିକାର ହୋଇ ରହିଲା । ତ୍ରିଂଶ ଥର ସକାଶେ ଏହିଠାରେ ପ୍ରଜାମାନେ ରାଜାଙ୍କୁ ଜଣିଲେ ।

(୧୧)

# ସାଇମନ୍ ମଣ୍ଟଫୋର୍ଟ

ଜନ୍ ଯେତେବେଳେ ମଲେ ତାଙ୍କ ପୁଅ ତୃତୀୟ ହେନ୍ରୀ ଅତି କ୍ଷୁଦ୍ର ବାଳକ ଥିଲେ । ସେ ମହାସନଦ ସ୍ୱୀକାର କଲେ । ତାଙ୍କ ପକ୍ଷରୁ ପେମ୍ବ୍ରୋକ୍ ରାଜ୍ୟ ଶାସନ କଲେ । କିନ୍ତୁ ହେନ୍ରୀ ଯେତେବେଳେ ବଡ଼ ହେଲେ, ସେ ନିଜେ ରାଜ୍ୟ ଚଳାଇଲେ ଏବଂ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ । ସେ ବିଦେଶରୁ ଲୋକ ଆଣି ସେମାନଙ୍କୁ ରାଜ୍ୟର ସବୁ ଚାକିରି ଦେଲେ । ପୋପ୍ ନାନା ପ୍ରକାର କର ଇଂଲଣ୍ଡରୁ ଅସୁଲ୍ କଲେ । ବେରନ୍‌ମାନେ ସଭା କରି ହେନ୍ରୀଙ୍କୁ ଭଲ ପରାମର୍ଶ ଦେଲେହେଁ ହେନ୍ରୀ କିଛି ଶୁଣିଲେ ନାହିଁ ।



୩-୧ ହେନ୍ରୀ

ଫ୍ରାନ୍‌ସରୁ ସାଇମନ୍ ବୋଲି ଜଣେ ଲୋକ ଭାଗ୍ୟ ପରୀକ୍ଷା କରିବା ନିମନ୍ତେ ଇଂଲଣ୍ଡକୁ ଆସିଥିଲେ । ସେ ବୁଦ୍ଧିମାନ୍ ଥିଲେ । ହେନ୍ରୀ ତାଙ୍କ ହସ୍ତରେ ନିଜ ଭଗିନୀକୁ ସମର୍ପଣ କରି ତାଙ୍କୁ ଏସେଷ୍ଟରର ଅର୍ଲ୍‌ପଦ ପ୍ରଦାନ କଲେ । ସାଇମନ୍ ଭଲ ଶାସନ କରିବା ସକାଶେ ହେନ୍ରୀଙ୍କୁ କେତେଥର ପରାମର୍ଶ ଦେଲେ, କିନ୍ତୁ ହେନ୍ରୀ ତାହା ନ ଶୁଣିବାରୁ ସାଇମନ୍ ବିରକ୍ତ ହୋଇ ପ୍ରଜାମାନଙ୍କର ପକ୍ଷ ଗ୍ରହଣ କଲେ ଏବଂ ସେମାନଙ୍କର ନେତା ହେଲେ ।

ହେନ୍‌ରୀଙ୍କର ଟଙ୍କାର ଅଭାବ ହେଲା । ସେ ୧୨୫୮ ଖ୍ରୀରେ ଅକ୍‌ସଫୋର୍ଡ଼ରେ ବେରନ୍ ଓ ବିଶପ ଆଦିଙ୍କୁ ଜମା କରି ଏକ ପାର୍ଲିମେଣ୍ଟ ବା ସଭା ଡାକିଲେ । ସାଇମନ୍ ଲୋକମାନଙ୍କ ପକ୍ଷରୁ ନେତା ହୋଇ ଗୋଟିଏ ନୂଆ ବ୍ୟବସ୍ଥା ତିଆରି କଲେ । ଏହାକୁ ଅକ୍‌ସଫୋର୍ଡ଼ ବ୍ୟବସ୍ଥା (Provisions of Oxford) କହନ୍ତି । ଏହି ବ୍ୟବସ୍ଥା ଫଳରେ ବେରନ୍‌ମାନେ ୧୨ ଜଣ ଏବଂ ରାଜା ୧୨ ଜଣ ସଦସ୍ୟ ନିଯୁକ୍ତ କଲେ । ଏହି ଚବିଶ ଜଣ ସଦସ୍ୟ ଘେନି ଗୋଟିଏ ପରିଷଦ ଗଠିତ ହେଲା । ସେମାନଙ୍କ ହାତରେ ରାଜ୍ୟର ସବୁ କ୍ଷମତା ଅର୍ପିତ ହେଲା । ଏଥିରୁ ପୁନଶ୍ଚ ବେରନ୍, ବିଶପ୍ ସମସ୍ତେ ମିଳି ୧୫ ଜଣ ସଦସ୍ୟ ବାଛିଲେ । ସେମାନେ ରାଜାଙ୍କ ପରିବର୍ତ୍ତିରେ ରାଜ୍ୟର ସମସ୍ତ ଶାସନ କାର୍ଯ୍ୟ ଚଳାଇଲେ । ଏହି ପରିଷଦ ଶାସନ କାର୍ଯ୍ୟସକାଶେ ପ୍ରଥମ ପରିଷଦ ନିକଟରେ ଦାୟୀ ରହିଲା ।

ହେନ୍‌ରୀ ଅକ୍‌ସଫୋର୍ଡ଼ ବ୍ୟବସ୍ଥାକୁ ସ୍ୱୀକାର କଲେ, କିନ୍ତୁ ନିଜ ପ୍ରତିଜ୍ଞା ପାଳନ କଲେ ନାହିଁ । ବେରନ୍‌ମାନେ ଏଥିରେ ଅସନ୍ତୁଷ୍ଟ ହୋଇ ଯୁଦ୍ଧ ଘୋଷଣା କଲେ । ୧୨୬୪ ଖ୍ରୀଃ ଅଃ ରେ ହେନ୍‌ରୀ ତାଙ୍କ ପୁଅ ଏଡ୍‌ଓ୍ୱାର୍ଡ଼ ଯୁଦ୍ଧରେ ବନ୍ଦୀ ହେଲେ । ସାଇମନ୍ ଦେଶର ପ୍ରକୃତ ଶାସନକର୍ତ୍ତା ହେଲେ ।

ସାଇମନ୍ ବୁଝିଥିଲେ, ଯେଉଁମାନଙ୍କୁ ଘେନି ଦେଶ, ଯେଉଁମାନଙ୍କ ସକାଶେ ଶାସନ, ଶାସନ ବ୍ୟବସ୍ଥା କରିବାକୁ ହେଲେ ସେହି ପ୍ରଜାମାନଙ୍କର ଅଭିମତ ନେବାକୁ ହେବ । ତାହାହେଲେ ଦେଶର ଆଇନ ସବଳ ହେବ, ତାକୁ ସମସ୍ତେ ମାନିବେ । ୧୨୬୫ ଖ୍ରୀଃ ଅଃ ରେ ସେ ପ୍ରଜାମାନଙ୍କର ଏକ ପାର୍ଲିମେଣ୍ଟ ଆହ୍ୱାନ କଲେ । ସେଠାକୁ ଅର୍ଲ୍, ବେରନ୍‌ମାନେ ଆସିଲେ; ୧୧୮ ଜଣ ଧର୍ମଯାଜକ ଆସିଲେ ଏବଂ ପ୍ରତି ଶାୟାର ଓ ବରୋରୁ ଦୁଇ ଜଣ ଲେଖାଏଁ ପ୍ରତିନିଧି ଆସିଲେ ।

ଏହାକୁ ସାଇମନ୍ ପାର୍ଲିମେଣ୍ଟ ବା ବେରନ ମହାସଭା (Great Council of Barons) କହନ୍ତି । ଏହା ପ୍ରକୃତରେ ଇଂଲଣ୍ଡର ପ୍ରଥମ ଜାତୀୟ ମହାସଭା ଏବଂ ଏହାର ଆଦର୍ଶରେ ବିଳାତରେ ବର୍ତ୍ତମାନ ପାର୍ଲିମେଣ୍ଟର ସୃଷ୍ଟି ହୋଇଅଛି ।

ସାଇମନ୍ ବେରନ୍‌ମାନଙ୍କ ସଙ୍ଗେ କଳି କଲେ । ଏହି ସୁଯୋଗରେ ଏଡ୍‌ୱାର୍ଡ଼ ବନ୍ଦୀଘରୁ ପଳାଇ ଆସି ଯୁଦ୍ଧ କଲେ । ୧୨୬୫ ଖ୍ରୀ: ଅ: ର ଇଭ୍‌ଶାମ୍ ଯୁଦ୍ଧକ୍ଷେତ୍ରରେ ସାଇମନ୍ ପରାସ୍ତ ଓ ନିହତ ହେଲେ ।

ଏଡ୍‌ୱାର୍ଡ଼ ପିତାଙ୍କୁ ବନ୍ଦୀଘରୁ ମୁକ୍ତ କରି ପୁଣି ଇଂଲଣ୍ଡର ସିଂହାସନରେ ବସାଇଲେ । ହେଲେ, ସେତେବେଳକୁ ବୃଦ୍ଧ ହୋଇ-ପଡ଼ିଥିଲେ । ସେ ପୁଅ ହାତରେ ଶାସନକାର୍ଯ୍ୟ ଛାଡ଼ିଦେଲେ । ଏଡ୍‌ୱାର୍ଡ଼ ସାଇମନଙ୍କ କାର୍ଯ୍ୟରୁ ବହୁତ ଶିକ୍ଷା କରିଥିଲେ । ସେ ତାଙ୍କ ଦୃଷ୍ଟାନ୍ତ ଅନୁସରଣ କରି ଏବଂ ଲୋକପ୍ରତିନିଧିମୂଳକ ପାର୍ଲିମେଣ୍ଟ ଡାକି ଦେଶରେ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ କଲେ । ହେଲେ, ୧୨୭୨ ଖ୍ରୀ: ରେ ମଲେ ।

---

## (୧୨)

## ସାମାଜିକ ଅବସ୍ଥା ଓ ମଧ୍ୟଯୁଗର ସଭ୍ୟତା

ସାଧାରଣ ଲୋକମାନେ ମାଟି କୁଡ଼ିଆରେ ରହୁଥିଲେ । ଉଚ୍ଚପଦସ୍ଥ ବ୍ୟକ୍ତିମାନେ (Noble) ଦୁର୍ଗ ନିର୍ମାଣ କରି ତହିଁରେ ବାସ କରୁଥିଲେ । ଏହି ଦୁର୍ଗଗୁଡ଼ିକ ନିତାନ୍ତ ଅନ୍ଧାରୁଆ ଥିଲା । ସୁନ୍ଦର ଗିର୍ଜାଘର ନିର୍ମାଣ କରିବାକୁ ଲୋକମାନେ ଅତି ପ୍ରିୟ ମଣୁଥିଲେ ।

ସୁନ୍ଦର ଜନିଷ ପ୍ରତି ଲୋକଙ୍କର ଆଦର ଓ ବାସନା କ୍ରମେ ବଢ଼ୁଥିଲା । ଝରକାଗୁଡ଼ିକ ଉଚ୍ଚ ଓ ବଡ଼ କରିବାକୁ ଏବଂ ତହିଁରେ ନାନା ରଙ୍ଗର ଉଜ୍ଜ୍ୱଳ କାଚ ଲଗାଇବାକୁ ଲୋକେ ଶିଖୁଥିଲେ । ଏ କାର୍ଯ୍ୟ ପ୍ରଥମେ ଗିର୍ଜାମାନଙ୍କରେ ଆରବ୍‌ଧ ହୋଇଥିଲା ।

ଏତେବେଳେ ଦଳେ ଲୋକ ବାହାରିଲେ, ସେମାନେ ବିନା ଜୋତାରେ ବୁଲି, ଗେରୁଆ ଲୁଗା ପିନ୍ଧି, ଅଣ୍ଟାରେ ଖଣ୍ଡିଏ ଦଉଡ଼ି ଭିଡ଼ି ବୁରିଆଡ଼େ ବୁଲି ଲୋକଙ୍କର ସେବା କଲେ । ସେମାନେ ମୁଠାଏ ଖାଇବାକୁ ପାଇଲେ ସନ୍ତୁଷ୍ଟ ରହୁଥିଲେ । କେଉଁଠି ଗଛତଳେ, ପାହାଡ଼ ଗୁମ୍ଫାରେ ଅଥବା ଯେଉଁଠି ଜାଗା ପାଇଲେ, ସେଇଠି ଶୋଉଥିଲେ । ଗରିବ, ଦୁଃଖୀ, ବିପଦାଗ୍ରସ୍ତ ଲୋକଙ୍କର ସେବା କଲେ । ସମସ୍ତଙ୍କୁ ଈଶ୍ୱରଙ୍କ ନାମ ଶୁଣାଇଲେ । ଏମାନଙ୍କୁ ଫ୍ରାୟାର (ଭାଇ) କହନ୍ତି । ଇଟାଲୀରେ ଫ୍ରାୟାର ଦଳର ପ୍ରଥମ ସୃଷ୍ଟି ହୋଇ ଇଉରୋପର ଅନେକ ଦେଶରେ ଏପରି କି ଇଂଲଣ୍ଡ ପର୍ଯ୍ୟନ୍ତ ବ୍ୟାପିଥିଲା ।

ମଙ୍କ ବା ସନ୍ନ୍ୟାସୀମାନେ ମଠରେ ରହୁଥିଲେ । ସେମାନେ ଅତୀତରେ ଅତି ପବିତ୍ର ଜୀବନ ଯାପନ କରୁଥିଲେ; କିନ୍ତୁ ମଧ୍ୟ ଯୁଗରେ ତାଙ୍କ ଜୀବନର କଠୋରତା ଟିକିଏ ଶିଥିଳ ହୋଇ ପଡ଼ିଥିଲା । ଏହାର ଫଳରେ ଫ୍ରାୟାର୍ ଆନ୍ଦୋଳନ ଅଧିକ ଲୋକପ୍ରିୟ ହୋଇଥିଲା । କେତେକ ଫ୍ରାୟାର ଅତ୍ୟନ୍ତ ବିଦ୍ୱାନ୍ ଥିଲେ । ଇଂଲଣ୍ଡରେ ଓ ଇଉରୋପରେ କେତେକ ବିଶ୍ୱବିଦ୍ୟାଳୟ ଥିଲା । ଫ୍ରାୟାର୍‌ମାନେ ଏହି ବିଶ୍ୱବିଦ୍ୟାଳୟମାନଙ୍କରେ ବକ୍ତୃତା ମଧ୍ୟ ଦେଉଥିଲେ । ଲୋକେ ସେମାନଙ୍କର ପାଣ୍ଡିତ୍ୟର ଆଦର କରୁଥିଲେ ।

ଇଂଲଣ୍ଡରେ ଅକ୍‌ସଫୋର୍ଡ ସର୍ବ ପ୍ରଥମ ବିଶ୍ୱବିଦ୍ୟାଳୟ ଥିଲା । ଲାଟିନ୍ ଶିକ୍ଷାର ପ୍ରଧାନ ଭାଷା ଥିଲା । ଇଂରାଜୀ ଶିକ୍ଷା ଦିଆଯାଉ ନ ଥିଲା । ଛାତ୍ରମାନେ ଅକ୍‌ସଫୋର୍ଡରୁ ଫ୍ରାନ୍‌ସର ପାରି ବିଶ୍ୱବିଦ୍ୟାଳୟକୁ

ଏବଂ ଇଟାଲୀର ବଲୋନା ବିଶ୍ୱବିଦ୍ୟାଳୟକୁ ମଧ୍ୟ ଶିକ୍ଷା ସକାଶେ ଯାଉଥିଲେ ।

ବେକନ୍ ବୋଲି ଜଣେ ଫ୍ରାୟାର ଅତି ବିଦ୍ୱାନ୍ ଥିଲେ । ସେ ସେହି ସମୟର ସର୍ବ ପ୍ରଥମ ବୈଜ୍ଞାନିକ ଥିଲେ । ସେ ଯାହା ଶୁଣନ୍ତି ତାହା ପରୀକ୍ଷା ନ କଲେ ବିଶ୍ୱାସ କରନ୍ତି ନାହିଁ । ସେ କହିଥିଲେ, ଦିନେ ଏପରି ଏକ ଗାଡ଼ି ବାହାରିବ ଯେ ତାକୁ ଟାଣିବା ଲାଗି ଘୋଡ଼ା ବା ଅନ୍ୟ ପଶୁ ଆବଶ୍ୟକ ହେବ ନାହିଁ । ଆଉ ଏକ ପ୍ରକାର ଯାନ ବାହାରିବ, ତାହା ଆକାଶରେ ଉଡ଼ିବ । ଆଜିକାଲିକାର ମୋଟରଗାଡ଼ି ଓ ଉଡ଼ା ଜାହାଜ ଦେଖିଲେ ବେକନଙ୍କ କଥା ସତ୍ୟ ହେଲା ବୋଲି ମନେ ହୁଏ । ସେ ଏକ ପ୍ରକାର ଦୂରବୀକ୍ଷଣ ଯନ୍ତ୍ର ବାହାର କରିଥିଲେ । ତୁମ ଗାଆଁରେ ତୁମ ସ୍କୁଲରେ କେତେ ଲୋକ ଚସମା ଲଗାଇଥିବାର ତୁମେ ଦେଖୁଛ । ବେକନ ଏହି ଚସମା ପ୍ରଥମେ ବାହାର କରିଥିଲେ ।

ବେକନ୍ କିପରି ପଣ୍ଡିତ ଲୋକ ଥିଲେ, ତୁମେ ଏଥିରୁ ବୁଝି ପାରୁଥିବ । ଆଜିକାଲି ତୁମ୍ଭେମାନେ ତାଙ୍କ ପାଣ୍ଡିତ୍ୟ କଥା ଶୁଣି ତାଙ୍କୁ ମନରେ କେତେ ସମ୍ମାନ କରୁଥିବ । କିନ୍ତୁ ମଧ୍ୟଯୁଗର ଲୋକେ ଆଜି କାଲିର ଲୋକଙ୍କ ପରି ଶିକ୍ଷିତ ନ ଥିଲେ । ବେକନ୍ ଯେତେବେଳେ ତାଙ୍କର ନୂଆ ନୂଆ କଥାମାନ କହିଲେ, ଲୋକେ ମନେ କଲେ, ସେ ଜଣେ ଭୟଙ୍କର ଲୋକ, କେଜାଣି ତାଆଣା ନା ଅସୁର । ତାଙ୍କଦ୍ୱାରା ଦେଶର ଅଶୁଭ ହେବ । ସେମାନେ ତାଙ୍କୁ ନେଇ ଜେଲଖାନା ଭିତରେ ଭର୍ତ୍ତି କରିଦେଲେ । ପଛକୁ ପୋପ୍ ତାଙ୍କ କଥା ବୁଝିଲେ ଏବଂ ତାଙ୍କୁ ଜେଲଖାନାରୁ ଛାଡ଼ିଦେଲେ । ମଧ୍ୟଯୁଗର ଲୋକେ ଆଉ ଆଜିକାଲିର ଲୋକଙ୍କ ଭିତରେ କେତେ ପାର୍ଥକ୍ୟ ତୁମେ ଏଥିରୁ ବୁଝି ପାରୁଥିବ ।

---

## (୧୩)

## ସ୍କଟଲଣ୍ଡ ଓ ଇଂଲଣ୍ଡ ମଧ୍ୟରେ ଯୁଦ୍ଧ

ସେକ୍ସନମାନେ ବ୍ରିଟନମାନଙ୍କୁ ୱେଲସର ଜଙ୍ଗଲକୁ ତଡ଼ି ଦେଇଥିଲେ । ସେମାନେ ସେଠାର ପର୍ବତ ଅରଣ୍ୟରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କରିଥିଲେ ଏବଂ କୃଷି ଓ ପଶୁପାଳନ କରି



ୱେଲସର କାର୍ଣ୍ଣାର୍ଭନ ଦୁର୍ଗ

ବଞ୍ଚୁଥିଲେ । ଲ୍ଉଲିନ ଏହି ସର୍ଦ୍ଦାରମାନଙ୍କର ପ୍ରଧାନ ବା ରାଜା ଥିଲେ । ଇଂଲଣ୍ଡ ରାଜା ପ୍ରଥମ ଏଡ୍‌ୱାର୍ଡ଼ ୧୨୭୭ ଖ୍ରୀ:ରେ ୱେଲସ୍ ଆକ୍ରମଣ କଲେ ଏବଂ କିଛିଦିନ ପରେ ତାଙ୍କୁ ଯୁଦ୍ଧରେ ନିହତ କଲେ । ୱେଲସ୍ ଇଂରେଜ ରାଜ୍ୟରେ ମିଶିଗଲା । ଏଡ୍‌ୱାର୍ଡ଼ ୱେଲସର ଲୋକମାନଙ୍କୁ ଖୁସି କରିବା ସକାଶେ ତାଙ୍କ ବଡ଼ ପୁଅଙ୍କୁ ପ୍ରିନ୍‌ସ୍ ଅବ୍ ୱେଲସ୍ ବୋଲି ଡାକିଲେ । ଇଂରେଜ ରାଜାଙ୍କର ବଡ଼ ପୁଅ ଆଜିପର୍ଯ୍ୟନ୍ତ ଏହି ନାମ ଗ୍ରହଣ କରି ଆସୁଅଛନ୍ତି ।

ୱେଲ୍‌ସ ଜୟ କରି ଏଡ୍‌ୱାର୍ଡ଼ ସନ୍ତୁଷ୍ଟ ରହି ନ ଥିଲେ। ସେ ସ୍କଟଲଣ୍ଡ ମଧ୍ୟ ଜୟ କରିବା ନିମନ୍ତେ ବାହାରିଲେ। ୧୨୮୬ଖ୍ରୀ:ଅ:ରେ ସ୍କଟଲଣ୍ଡର ରାଜା ଆଲେକ୍‌ଜାଣ୍ଡାର ଘୋଡ଼ା ଉପରୁ ପଡ଼ି ମରିଗଲେ। ତାହାଙ୍କର ପୁଅ ଝିଅ କେହି ନ ଥିଲେ; ତେଣୁ ରାଜାଙ୍କ ଦୂର ବଂଶଧରମାନେ ସିଂହାସନ ସକାଶେ କଳି କଲେ। ସେମାନେ ନିଜ ମଧ୍ୟରେ କଳି ମେଣ୍ଟାଇ ନ ପାରିବାରୁ ଏଡ୍‌ୱାର୍ଡ଼ଙ୍କୁ ମଧ୍ୟସ୍ଥ କଲେ ଏବଂ କଳି ମେଣ୍ଟାଇ ଦେବା ଲାଗି ପ୍ରାର୍ଥନା କଲେ। ଏଡ୍‌ୱାର୍ଡ଼ କହିଲେ, "ତୁମ୍ଭ ମଧ୍ୟରୁ ମୁଁ ଯାହାକୁ ରାଜା କରିବି, ସେ ଯଦି ମୋତେ ଅଧିନାୟକ ବୋଲି ସ୍ୱୀକାର କରିବ, ତେବେ ମୁଁ ତୁମ୍ଭର କଳି ନିଷ୍ପତ୍ତି କରିଦେବି।" ସେମାନେ ଏଥିରେ ରାଜି ହେଲେ, ଏଡ୍‌ୱାର୍ଡ଼ ଜନ୍ ବେଲିଅଲଙ୍କୁ ସ୍କଟଲଣ୍ଡର ରାଜା କଲେ।



ସ୍କଟଲଣ୍ଡର ଅଭିଷେକ ସିଂହାସନ

କିଛିଦିନ ପରେ ଏଡ୍‌ୱାର୍ଡ଼ କହିଲେ, "ଯେଉଁମାନେ ସ୍କଟ୍ ରାଜାଙ୍କର ବିଚାରରେ ଅସନ୍ତୁଷ୍ଟ ହେବେ, ସେମାନେ ଇଂରେଜ ରାଜାଙ୍କଠାରେ ଅପିଲ କରି ପାରିବେ।" ଏଥିରେ ବେଲିଅଲ୍ ରାଜି ହେଲେ ନାହିଁ। ଏଡ୍‌ୱାର୍ଡ଼ ଯୁଦ୍ଧ କରି ବେଲିଅଲଙ୍କୁ ବନ୍ଦୀ କଲେ ଏବଂ ସ୍କଟଲଣ୍ଡରେ ଜଣେ ଇଂରେଜ ଶାସନକର୍ତ୍ତା ରଖିଲେ।

ସ୍କଟମାନେ ଏଥିରେ ଅତଶୟ ଚିଡ଼ିଲେ ଏବଂ ଜଣକ ପରେ ଜଣକୁ ନେତା କରି କ୍ରମାଗତ ଯୁଦ୍ଧ ଚଳାଇଲେ । ଶେଷ ନେତା ରବର୍ଟ ବ୍ରୁସ ଭାରି ଉଦ୍ୟୋଗୀ ଲୋକ ଥିଲେ । ସେ ନିଜକୁ ରାଜା ବୋଲି ଘୋଷଣା କଲେ ଏବଂ ଯେତେ ହାରିଲେ ମଧ୍ୟ



ପ୍ରଥମ ଏଡ଼ୱାର୍ଡ଼ଙ୍କ ସମାଧିର ଚିତ୍ର

ମାନିଲେ ନାହିଁ । ସେତେବେଳକୁ ଏଡ଼୍‌ୱାର୍ଡ଼ ବୁଢ଼ା ହୋଇ ଯାଇ-ଥିଲେ । ସ୍କଟଲଣ୍ଡକୁ ଯିବା ବାଟରେ ତାଙ୍କର ମୃତ୍ୟୁ ଘଟିଲା ।

ଏଡ଼୍‌ୱାର୍ଡ଼ଙ୍କ ପୁଅ ଦ୍ୱିତୀୟ ଏଡୱାର୍ଡ଼ ଅତି ଅଳସୁଆ ଲୋକ ଥିଲେ । ସେ ବ୍ରୁସଙ୍କୁ ଏତେ ସମୟ ଦେଲେ ଯେ ସେ ନିଜ କ୍ଷମତା ଦୃଢ଼ରୂପେ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ । ବ୍ରୁସ୍ ଶେଷରେ



ବାନକ୍ ବର୍ଣ୍ଣର ଯୁଦ୍ଧ

ବେନକବର୍ଣ୍ଣ ଯୁଦ୍ଧକ୍ଷେତ୍ରରେ ଇଂରେଜମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ସ୍କଟଲଣ୍ଡର ସ୍ୱାଧୀନତା ପୁନରୁଦ୍ଧାର କଲେ (୧୩୧୪ ଖ୍ରୀ: ଅ:)

---

## ( ୧୪ )

## ପ୍ରଥମ ଏଡ଼ୱାର୍ଡ଼ଙ୍କ ଶାସନସଂସ୍କାର

ଏଡ଼ୱାର୍ଡ଼ ଭଲରୂପେ ବୁଝିଥିଲେ ଯେ, ଦେଶରେ ଶାନ୍ତି ସ୍ଥାପନ କରିବାକୁ ହେଲେ, ବେରନ୍ ଓ ବିଶପମାନଙ୍କର ଶକ୍ତି ଊଣା କରିବାକୁ ହେବ। ସେମାନେ ଅଧିକ ଅଧିକ ସମ୍ପତ୍ତିର ମାଲିକ ହୋଇଥିବାରୁ ଖୁବ୍ ପ୍ରତିପତ୍ତି ଓ ପ୍ରଭାବ ଅର୍ଜନ କରିଥିଲେ ଏବଂ ଦେଶରେ ନାନାପ୍ରକାର ଗୋଳମାଳ ଲଗାଉଥିଲେ। ଏଥି ସକାଶେ ସେ କେତେଗୁଡ଼ିଏ ନୂଆ ବ୍ୟବସ୍ଥା ପ୍ରଣୟନ କରିଥିଲେ।

ଗିର୍ଜାମାନଙ୍କୁ କେହି ଲୋକ ରାଜାଙ୍କ ଅନୁମତି ବିନା ଭୂମିବାଡ଼ି ଦାନ କରିବା ମନା କରିଦେଲେ ।

ବେରନ୍‌ମାନଙ୍କୁ ସୈନ୍ୟ ରଖିବାପାଇଁ ସେ ବାଧ୍ୟ କଲେ ନାହିଁ । ଯୁଦ୍ଧବେଳେ ସୈନ୍ୟ ଦେବା ପରିବର୍ତ୍ତିରେ ସେମାନଙ୍କୁ ଟଙ୍କା କର ଦେବାକୁ ଅନୁମତି ଦେଲେ ।

ସେ ସମସ୍ତ ପ୍ରଜାମାନଙ୍କୁ ଅସ୍ତ୍ରଶିକ୍ଷା କରିବାପାଇଁ ଆଦେଶ ଦେଲେ ଏବଂ ଯୁଦ୍ଧବେଳେ ରାଜାଙ୍କୁ ସାହାଯ୍ୟ କରି ଦେଶରକ୍ଷା କରିବା ସକାଶେ ପ୍ରବର୍ତ୍ତାଇଲେ । ବେରନ୍‌ମାନଙ୍କର ଯୁଦ୍ଧପ୍ରିୟତା ଓ ଶକ୍ତି ଏଥିରେ କମିଗଲା ଏବଂ ରାଜାଙ୍କର ଶକ୍ତି ବଢ଼ିଲା ।

ଜାହାଙ୍କ ସାମନ୍ତପ୍ରଥା ସାହାଯ୍ୟରେ ପାଇଥିବା ଜମିକୁ ବିକ୍ରି କରିବା ନିମନ୍ତେ ଅନୁମତି ଦେଲେ ନାହିଁ । ଯଦି କେହି ବିକ୍ରି କରେ, ସେହି ଜମି ଆଉ ବିକ୍ରେତାର ଅଧୀନରେ ରହିଲା ନାହିଁ, ତାହାର ଉପର ସାମନ୍ତର ଅଧୀନ ହେଲା । ଏହାର ଫଳରେ ସାମନ୍ତପ୍ରଥା କଠିନରୁ କଠିନତର ହେଲା ।

ଏଡ଼ୱାର୍ଡ଼ ସାଇମନଙ୍କ ଶତ୍ରୁ ହେଲେହେଁ, ତାଙ୍କଦ୍ୱାରା ଆରବ୍ଧ ପାର୍ଲିମେଣ୍ଟ ଶାସନପ୍ରଥାକୁ ଅନୁସରଣ କଲେ । ସେ ପ୍ରଜାମାନଙ୍କ ମତ ନେଇ ସେମାନଙ୍କୁ ଶାସନ କରିବାକାର୍ଯ୍ୟକୁ ସହଜ ଓ ସୁବିଧା ମନେ କରିଥିଲେ । ଏହି ଅନୁସାରେ ସେ ୧୨୯୫ଖ୍ରୀ: ଅ: ରେ "ଆଦର୍ଶ ମହାସଭା (Model Parliament)" ଆହ୍ୱାନ କରିଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଏହି ମହାସଭା ଦୁଇ ଭାଗରେ ବିଭକ୍ତ ହୋଇଥିଲା ଏବଂ ଏପର୍ଯ୍ୟନ୍ତ ସେହିପରି ରହିଅଛି । ଇଂଲଣ୍ଡର ରାଜାମାନଙ୍କ ମଧ୍ୟରେ ଏଡ଼ୱାର୍ଡ଼ ପ୍ରଥମେ ପାର୍ଲିମେଣ୍ଟ ଆହ୍ୱାନ କରିଥିଲେ । ସେ ତହିଁର ପ୍ରକୃତ ସ୍ରଷ୍ଟା ଥିଲେ ।

ଏଡ଼ବାର୍ଡ଼ ବର୍ଗର ବରାଜତରେ ମଧ୍ୟ ଅନେକ ପରିବର୍ତ୍ତନ କରିଥିଲେ । ସେ ରାଜାଙ୍କର ଭୂମି ପ୍ରଭୃତି ସଂକ୍ରାନ୍ତ ମୋକଦ୍ଦମା ପାଇଁ ଗୋଟିଏ ଅଲଗା ଅଦାଲତ ରଖିଥିଲେ । ରାଜସ୍ୱ ସମ୍ବନ୍ଧୀୟ ମୋକଦ୍ଦମା ପାଇଁ ଗୋଟିଏ ପୃଥକ୍ ଅଦାଲତ ରଖିଥିଲେ । ପ୍ରଜାମାନଙ୍କ ମଧ୍ୟରେ କଳିକଜିଆ ଓ ବିବାଦ ନିଷ୍ପତ୍ତି କରିବାପାଇଁ ଅନ୍ୟ ଗୋଟିଏ ଅଦାଲତ ରଖିଥିଲେ । ନିମ୍ନ ଅଦାଲତର ଦୋଷ ସଂଶୋଧନ ସକାଶେ ରାଜାଙ୍କର ପ୍ରଧାନମନ୍ତ୍ରୀଙ୍କ ଅଦାଲତ ରହିଥିଲା ।

---

( ୧୬ )

## ଶତବର୍ଷ ଯୁଦ୍ଧ

ତୁମ୍ଭେମାନେ ୟୁରୋପର ମାନଚିତ୍ରରେ ଇଂଲଣ୍ଡ ଓ ଫ୍ରାନ୍ସ ଦୁଇଟି ଦେଶକୁ ଦେଖ । ଇଂଲଣ୍ଡକୁ ସମୁଦ୍ର ବେଢ଼ିଛି ଏବଂ ତାହାର ଉପକୂଳରେ ବନ୍ଦରର ଅନେକ ସୁବିଧା ଅଛି । ଫ୍ରାନ୍ସର ଦେହକୁ ମଧ୍ୟ ସମୁଦ୍ର ଲାଗିଛି ଏବଂ ସେଥିରେ ବନ୍ଦରର ମଧ୍ୟ ସୁବିଧା ଅଛି । ପୁଣି ୟୁରୋପର ଅନ୍ୟାନ୍ୟ ସଭ୍ୟ ଦେଶମାନ ଫ୍ରାନ୍ସର ଖୁବ୍ ସନ୍ନିହିତ ଥିବାରୁ ଫ୍ରାନ୍ସ ସ୍ଥଳପଥରେ ସେମାନଙ୍କ ସଙ୍ଗେ ଏବଂ ଜଳପଥରେ ଇଂଲଣ୍ଡ ସଙ୍ଗେ ବାଣିଜ୍ୟ କରିବାର ସୁବିଧା ପାଏ । ୟୁରୋପରେ ବର୍ତ୍ତମାନ ଇଂଲଣ୍ଡ ଓ ଫ୍ରାନ୍ସ ଦୁଇଗୋଟି ସଭ୍ୟ, ଶିକ୍ଷିତ ଓ ଉନ୍ନତ ଜାତି । ଶିକ୍ଷା ବିଷୟରେ ଇଂଲଣ୍ଡ ଅପେକ୍ଷା ଫ୍ରାନ୍ସର ପ୍ରାଚୀନ ଗୌରବ ଅଧିକ । ପୃଥିବୀ ମଧ୍ୟରେ ଭାରତକୁ ଛାଡ଼ିଦେଲେ, ସର୍ବପ୍ରଥମେ ଇଟାଲୀ ଓ ଫ୍ରାନ୍ସରେ ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା । ପ୍ରଜାତନ୍ତ୍ରମୂଳକ

ସଂସଦ ପ୍ରତିଷ୍ଠାର ପ୍ରଥମ କଳ୍ପନା ଫରାସୀମାନେ କରିଥିଲେ । ଏହି ଦିଗରେ ଫ୍ରାନ୍‌ସ ପୃଥିବୀର ଅଗ୍ରଣୀ ଅଟେ ।

ଅତି ପ୍ରାଚୀନକାଳରୁ ଫ୍ରାନ୍‌ସ ଓ ଇଂଲଣ୍ଡ ମଧ୍ୟରେ ବାଣିଜ୍ୟ ଚଳୁଥିଲା । ପୂର୍ବେ ଇଂଲଣ୍ଡରେ ପ୍ରଚୁର ପଶମ ଉତ୍ପନ୍ନ ହେଉଥିଲା । ଆଜିକାଲି ସିନା ଇଂଲଣ୍ଡରେ ଅନେକ ଲୁଗାକଳ ଅଛି, କିନ୍ତୁ ସେତେବେଳେ ଇଂଲଣ୍ଡବାସୀ ଏହି ପଶମରୁ ନିଜେ ବସ୍ତ୍ର ତିଆରି ନ କରି ଫ୍ରାନ୍‌ସକୁ ରପ୍ତାନି କରୁଥିଲେ । ଫ୍ରାନ୍‌ସରେ ଫ୍ଲେଣ୍ଡାର ସହର ପଶମବସ୍ତ୍ରର କାରବାର ସକାଶେ ପ୍ରସିଦ୍ଧ ଥିଲା । ସେଠାରେ ଶୀତବସ୍ତ୍ର ବୁଣା ହୋଇ ପୁଣି ଇଂଲଣ୍ଡକୁ ଆମଦାନି ହେଉଥିଲା । ଫରାସୀ ଓ ଇଂରେଜ ବଣିକମାନେ ବାଣିଜ୍ୟ କରୁଥିବା ବେଳେ ନାନାପ୍ରକାର କଳିକଜିଆ କରୁଥିଲେ । ଇଂଲଣ୍ଡ ପ୍ରଣାଳୀରେ ଭେଟ ହେଲେ, ସେମାନଙ୍କର ନାବିକମାନେ ପରସ୍ପର ଯୁଦ୍ଧ ନ କରି ଛାଡୁ ନ ଥିଲେ । ତୃତୀୟ ଏଡ଼ୱାର୍ଡ ପଶମ ବାଣିଜ୍ୟର ଉପକାରିତା ବୁଝି ତହିଁର ଉତ୍କର୍ଷ ସାଧନ କରିବାକୁ ଚାହାଁଲେ ଏବଂ ବଣିକମାନଙ୍କ ପ୍ରତି ସହାନୁଭୂତି ଦେଖାଇଲେ । ଫଳରେ ବଣିକଙ୍କ ବିବାଦ ଯୋଗୁଁ ଦୁଇ ଜାତି କ୍ରମେ ପରସ୍ପରକୁ ଘୃଣା କରିବାକୁ ଆରମ୍ଭ କଲେ । ରାଜାମାନେ ମଧ୍ୟ ସେହି ବିବାଦ ଓ ଘୃଣାରେ କ୍ରମେ ଅଂଶୀଦାର ହେବାକୁ ବସିଲେ ।

ଦ୍ୱିତୀୟ ହେନ୍‌ରି ଫ୍ରାନ୍‌ସର ଅର୍ଦ୍ଧେରୁ ଅଧିକ ରାଜ୍ୟର ଅଧିପତି ଥିଲେ । ନିଜ ରାଜ୍ୟର ଏତେ ଅଧିକ ଅଂଶରେ ଅନ୍ୟ ଜଣେ ରାଜା ମାଲିକ ହେବା କଥା ଫରାସୀ ରାଜା ସହିନ୍ତେ କିପରି ? ସେ ତାହାକୁ କିପରି ଛଡ଼ାଇ ଆଣିବେ, ସବୁବେଳେ ଜଗିବସିଲେ । ଜନ୍‌ଙ୍କ ଦୁର୍ବଳ ଥିବା ଜାଣି ସେ ସହଜ ସଙ୍ଗେ ନିଜ ଅଭିପ୍ରାୟ ସିଦ୍ଧ କଲେ । ତୃତୀୟ ହେନ୍‌ରି ସେଥିରୁ ପୁଣି କିଛି ଯୌତୁକରୂପେ ପାଇଲେ । ସେଥିରେ

ପୁଣି ସେହି ବିବାଦ ଫେର ଆସିଲା । ଗୋଟିଏ ଜାତି ଅନ୍ୟ ଜାତିକୁ କିମ୍ବା ଜଣେ ବ୍ୟକ୍ତି ଅନ୍ୟ ବ୍ୟକ୍ତିକୁ ଘୃଣା କରିବାକୁ ଆରମ୍ଭ କଲେ ସେ ଆଉ ଭଲ ମନ୍ଦ, ନ୍ୟାୟ ଅନ୍ୟାୟ, ଉଚିତ ଅନୁଚିତ ବିଚାର କରେ ନାହିଁ । ପୋପ୍ ଜନ୍‌ଙ୍କ ରାଜତ୍ୱରେ ଯେତେବେଳେ ଫ୍ରାନ୍‌ସ୍ ରାଜାଙ୍କୁ ଇଂଲଣ୍ଡ ଆକ୍ରମଣ କରିବା ପାଇଁ ହୁକୁମ ଦେଲେ, ସେତେବେଳକୁ ଫରାସୀ ରାଜା ଗୋଡ଼ ଟେକିଥିଲେ । ସେ ସାଙ୍ଗେ ସାଙ୍ଗେ ସେହି ହୁକୁମ ପାଳନ କଲେ । ଏଡ୍‌ୱାର୍ଡ଼ଙ୍କ ରାଜତ୍ୱରେ ଯେତେବେଳେ ଇଂଲଣ୍ଡ ଓ ସ୍କଟଲଣ୍ଡ ମଧ୍ୟରେ ଯୁଦ୍ଧ ଚାଲିଥିଲା, ସେତେବେଳେ ଫରାସୀମାନେ ଗୋପନ ଓ ପ୍ରକାଶ୍ୟରେ ସ୍କଟ୍‌ମାନଙ୍କୁ ଉତ୍ତେଜନା ଓ ସାହାଯ୍ୟ ଦେଲେ । ଇଂରେଜମାନେ ଆଉ ଏସବୁ ଜାଣି ଶୁଣି ସହିବେ କିପରି ? ସେମାନେ ଗୋଟିଏ ଯୁଦ୍ଧର ଅବସର ଲୋଡ଼ି ବସିଲେ । ଠିକଏ ସୁଯୋଗ ପାଇଲେ ପ୍ରତିଶୋଧ ନେବେ । ଯଥାସମୟରେ ସେମାନଙ୍କର ଉଚିତ ଅବସର ଆସି ପହଞ୍ଚିଗଲା ।

ଫ୍ରାନ୍‌ସର ରାଜା ଚତୁର୍ଥ ଚାର୍ଲସଙ୍କ ମୃତ୍ୟୁ ହେଲା । ତାଙ୍କର ପୁଅ ନ ଥିଲେ । ତେଣୁ ଫରାସୀମାନେ ତାଙ୍କ ପିତୃବ୍ୟ ଭୁଡ଼ା ଫିଲିପଙ୍କୁ ରାଜା କଲେ । ଇଂଲଣ୍ଡର ସେ ସମୟର ରାଜା ତୃତୀୟ ଏଡ୍‌ୱାର୍ଡ଼ କହିଲେ ଯେ, ଫିଲିପ୍ ସିଂହାସନର ପ୍ରକୃତ ହକଦାର ନୁହନ୍ତି । ଚାର୍ଲସଙ୍କ ପୁଅ ସିନା ନାହାନ୍ତି, ତାଙ୍କ ଝିଅ ଅଛନ୍ତି । ଏହି ଝିଅ ଏଡ୍‌ୱାର୍ଡ଼ଙ୍କ ମା, ଇସାବେଲା । ସେ ମାଙ୍କ ତରଫରୁ ଫରାସୀ ସିଂହାସନ ଦାବୀ କଲେ; କିନ୍ତୁ ଫରାସୀମାନଙ୍କ ପରି ଉନ୍ନତ, ଶିକ୍ଷିତ, ସଭ୍ୟ ଓ ଗୌରବାନ୍ୱିତ ଜାତି ଜଣେ ବିଦେଶୀକୁ ସିଂହାସନ ଛାଡ଼ି ଦେଇଛନ୍ତି କେବେ କେ ?



ତୃତୀୟ ଏଡୱାର୍ଡ଼ ଓ ତାଙ୍କ ରାଣୀ

ଦୁଇ ଜାତି ମଧ୍ୟରେ ଥିବା ପୂର୍ବ ସଞ୍ଚିତ କ୍ରୋଧ ଧୂ ଧୂ ହୋଇ ଜଳି ଉଠିଲା । କେହି ନିଜର ନ୍ୟାୟ ଅନ୍ୟାୟ ବୁଝିଲେ ନାହିଁ । ଯୁଦ୍ଧ ଆରମ୍ଭ କଲେ । ଶହେ ବର୍ଷ ପର୍ଯ୍ୟନ୍ତ ସେମାନଙ୍କର ବିଦ୍ୱେଷଭାବ ଯାଇ ନ ଥିଲା, ସୁତରାଂ ସେମାନେ ଶହେ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲେ । ମଝିରେ ମଝିରେ ଯଦି କୌଣସି କାରଣରୁ ଯୁଦ୍ଧ ବନ୍ଦ ହୋଇ ଯାଉଥିଲା, ତଥାପି ସେମାନେ ପୁଣି କିପରି ଏହି ଯୁଦ୍ଧକୁ ଚଳାଇବେ ସେଥିପାଇଁ ପ୍ରସ୍ତୁତ ହେଉଥିଲେ । ଏହାକୁ "ଶତବର୍ଷ ଯୁଦ୍ଧ" କହନ୍ତି । ୧୩୩୮ ଖ୍ରୀ: ଅ: ରେ ଏହି ଯୁଦ୍ଧ ଆରମ୍ଭ ହେଲା ।

- ତୃତୀୟ ଫିଲିପ୍ (ଫ୍ରାନ୍‌ସ ରାଜା)
  - ଚତୁର୍ଥ ଫିଲିପ୍
    - ଦଶମ ଲୁଇ
      - ଜେନ
        - ଚାର୍ଲସ୍
    - ପଞ୍ଚମ ଫିଲିପ୍
    - ଚତୁର୍ଥ ଚାର୍ଲସ୍
      - କନ୍ୟା
    - ଇସାବେଲା
      - ତୃତୀୟ ଏଡ଼ୱାର୍ଡ (ଇଂଲଣ୍ଡ)
  - ଚାର୍ଲସ୍
    - ଷଷ୍ଠ ଫିଲିପ୍
      - ଦ୍ୱିତୀୟ ଜେନ୍

ଇଂରେଜମାନେ ଫ୍ରାନ୍‌ସ ଆକ୍ରମଣ କଲେ । ସ୍ଲୁଇଠାରେ ଓଲନ୍ଦାଇ ଡପୋଏସିକୁ ଗଲେ, ଶସ୍ୟ ଲୁଣ୍ଠନ କଲେ, ଘରମାନ ପୋଡ଼ିଦେଲେ

ଏଡ଼ୱାର୍ଡ଼ଙ୍କ ଯୁଦ୍ଧ ବିଜୟଯାତ୍ରା—୧୩୪୬

ଏବଂ ଯାହା ପାଇଲେ ନେଇଗଲେ । ଫରାସୀମାନେ କେତେଠାରେ ସେମାନଙ୍କୁ ପ୍ରତ୍ୟାକ୍ରମଣ କଲେ । ଏଡୱାର୍ଡଙ୍କ ପୁତ୍ର ଯୁବରାଜ ବ୍ଲାକ୍ ପ୍ରିନ୍ସ ଯୁଦ୍ଧରେ ଖୁବ କୌଶଳ ଦେଖାଇଥିଲେ । ସେତେବେଳେ ତାଙ୍କ ବୟସ ୧୬ ବର୍ଷ । ଶତ୍ରୁମାନେ ତାଙ୍କୁ ଚାରିଦିଗରୁ ଘେରିଗଲାରୁ—ଯୁବରାଜ ଲୋକ ପଠାଇ ପିତାଙ୍କର ସାହାଯ୍ୟ ଲୋଡ଼ିଲେ । ପିତା ସାହାଯ୍ୟ ନ ଦେଇ ଉତ୍ତର ଦେଲେ—"ରାଜପୁତ୍ର ନିଜେ ଯୁଦ୍ଧ କରି ବିଜୟଲାଭ କରୁ ।"



ଏଡୱାର୍ଡ ବ୍ଲାକ୍‌ପ୍ରିନ୍ସ

ବ୍ଲାକ୍ ପ୍ରିନ୍ସ ଖୁବ ଲଢ଼ିଲେ ଏବଂ ଶେଷରେ ଜିଣିଲେ । ଏଡ଼ୱାର୍ଡ଼ ସେହି ଖବର ପାଇଁ ପୁଅକୁ ଆଲିଙ୍ଗନ କରି କହିଲେ, "ପୁଅ, ତୁ ମୋର ଉପଯୁକ୍ତ ବଂଶଧର । ମୋ ଅନ୍ତେ ତୁ ମୋର ରାଜ୍ୟ ଚଳାଇ ପାରିବୁ ।"

ଇଂରେଜମାନେ କାଲେ ବନ୍ଦର ଫରାସୀମାନଙ୍କଠାରୁ ଅଧିକାର କଲେ । ଏହା ରାଣୀ ଏନଙ୍କ ରାଜତ୍ୱ ପର୍ଯ୍ୟନ୍ତ ଇଂରେଜମାନଙ୍କ ହାତରେ ରହିଥିଲା । ୧୩୫୬ ଖ୍ରୀ: ଅ: ରେ ବ୍ଲାକ୍ ପ୍ରିନ୍ସ ଫରାସୀ ରାଜାଙ୍କୁ ବନ୍ଦୀ କଲେ । ଫରାସୀମାନେ ୧୩୬୦ ଖ୍ରୀ: ଅ: ରେ ବାଧ୍ୟ ହୋଇ ସନ୍ଧି କଲେ ଏବଂ ଫ୍ରାନ୍ସର ଦକ୍ଷିଣ ଅଂଶ ଇଂରେଜମାନଙ୍କୁ ଛାଡ଼ିଦେଲେ ।

ବ୍ଲାକ୍ ପ୍ରିନ୍ସ କିଛିଦିନ ଫ୍ରାନ୍ସରେ ରହି ଭଲରୂପେ ରାଜ୍ୟ ଚଳାଇଥିଲେହେଁ, ସେଠାରେ ତାଙ୍କର ସ୍ୱାସ୍ଥ୍ୟ ଭଲ ରହିଲା ନାହିଁ ।



କ୍ରେସି ଯୁଦ୍ଧ

ସେ ବାଧ୍ୟ ହୋଇ ଇଂଲଣ୍ଡକୁ ଫେରିଗଲେ । ତାଙ୍କ ଫେରିଯିବା ପରେ ଇଂରେଜମାନେ ଯୁଦ୍ଧରେ ପୁଣି ହାରିଲେ । ୧୩୭୫ ଖ୍ରୀ: ଅ: ବେଳକୁ ଦେଖାଗଲା ଯେ, ସେମାନେ ଫ୍ରାନସର ସବୁ ରାଜ୍ୟତକ ହରାଇଛନ୍ତି ।

୧୩୪୮ ଖ୍ରୀ: ଅ: ରେ ଇଂଲଣ୍ଡରେ 'ବ୍ଲାକ୍‌ଡେଥ୍' ନାମରେ ଏକ ଭୀଷଣ ପ୍ଲେଗ୍ ରୋଗ ଦେଖା ଦେଲା । ଏଥିରେ ଏତେ ମଲେ ଯେ ଲୋକେ ଶବମାନ ଘରୁ ବାହାର କରି ପାରିଲେ ନାହିଁ । ଗାଡ଼ିରେ ଶବ ସବୁକୁ ବୋହିଲେ; ଲଣ୍ଡନ ସହର ଶବଗନ୍ଧରେ ପୂରିଗଲା । ଗାଡ଼ିବାଲାମାନେ ସହର ଭିତରେ ବୁଲି କେବଳ "ତୁମ ଘରୁ




୧୧୬୦ ରେ ଫ୍ରାନ୍ସର ରାଜ୍ୟବିଭାଗ

ଶବ ବାହାର କର" ବୋଲି ଚିତ୍କାର କରୁଥାନ୍ତି । ଗୋଟିଏ ଗଞ୍ଜର ଗାତ ଖୋଳି ସେଥିରେ କେବଳ ଶବଗୁଡ଼ିକ ଫୋପାଡ଼ି ଦିଆ ଯାଉଥାଏ । କେବଳ ନରଉଇଚ୍ ସହରରୁ ଷାଠିଏ ହଜାର ଲୋକ ମରିଥିଲେ । ମୋଟରେ ଇଂଲଣ୍ଡର ଅଧେ ଲୋକ ବ୍ଲାକ୍‌ଡେଥ୍‌ରେ ମରିଥିଲେ । ଶତବର୍ଷ ଯୁଦ୍ଧରେ ଲୋକେ ସେଆଡ଼େ ଯେପରି ମରୁଥାନ୍ତି, ଏଆଡ଼େ ଇଂଲଣ୍ଡରେ ବ୍ଲାକ୍‌ଡେଥ୍‌ରେ ସେହିପରି ମରୁଥାନ୍ତି ।

ଇଂରେଜମାନେ ଫ୍ରାନ୍‌ସର ସବୁ ଅଧିକାର ହରାଇ ତୁନି ହୋଇ ରହନ୍ତେ କିପରି ? ଫ୍ରାନ୍‌ସରେ ଅର୍‌ଲିୟୋଁ ଓ ବର୍ଗଣ୍ଡି ନାମରେ ଦୁଇଟି ଦଳ ବାହାରିଲେ । ଏହି ଦୁଇ ଦଳ ନିଜ ଭିତରେ କଜିଆ କଲାରୁ ଇଂରେଜମାନଙ୍କ ସୁବିଧା ମିଳିଗଲା । ଇଂରେଜ ରାଜା ପଞ୍ଚମ ହେନ୍‌ରି ପୁଣି ଫରାସୀସ ଶାସନ ଦାବି କରି ୧୪୧୫ ଖ୍ରୀ: ଅ:ରେ ଫ୍ରାନ୍‌ସ




୧୪୧୫ର ଶତବର୍ଷ ଯୁଦ୍ଧଯାତ୍ରା

ଅକ୍ରମଣ କଲେ ଏବଂ ଏଜନ୍‌କୁର ଯୁଦ୍ଧରେ ଫରାସୀମାନଙ୍କୁ ପରାସ୍ତ କଲେ । କ୍ରମେ ନର୍ମାଣ୍ଡି ଜୟ କରି ୧୪୧୯ ଖ୍ରୀ: ଅ: ରେ ହେନ୍‌ରି, ଯେତେବେଳେ ରୁଅଁ ଅଧିକାର କଲେ, ଫରାସୀ ରାଜା ବାଧ୍ୟ ହୋଇ ସନ୍ଧି କଲେ । ଏହି ସନ୍ଧିକୁ ଟ୍ରୋୟା ସନ୍ଧି କହନ୍ତି । ଏହି ସନ୍ଧିଦ୍ୱାରା ହେନ୍‌ରି, ଫରାସୀ ରାଜକୁମାରୀଙ୍କୁ ବିବାହ କଲେ ଏବଂ ତାଙ୍କ ଶ୍ୱଶୁରଙ୍କ ଉତ୍ତାରୁ ଫ୍ରାନ୍‌ସର ରାଜା ହେବେ ବୋଲି ଠିକ୍ ହେଲା । ଫରାସୀ ରାଜା ପାଗଳ ଥିବାରୁ ହେନ୍‌ରି ତାଙ୍କ ପକ୍ଷରୁ ଫ୍ରାନ୍‌ସ ଶାସନ କଲେ । (୧୪୨୦)


ପଞ୍ଚମ ହେନ୍‌ରି

ଫରାସୀମାନଙ୍କ ପରି ଏକ ଗୌରବାନ୍ୱିତ ଜାତିକୁ ଇଂରେଜମାନେ ଏହିପରି ପଦାନତ କରିବା ଉପରେ ବସିଲେ । କିନ୍ତୁ ଏହା ସେମାନଙ୍କ ପକ୍ଷରେ ବୁଦ୍ଧି-ହୀନତାର ପରିଚାୟକ ଥିଲା । ଫରାସୀମାନେ ଚିରକାଳ ସ୍ୱାଧୀନ ଜାତି ହୋଇ ରହିଥିଲେ । ଆଜି ସେମାନେ ପରାଧୀନତାର ଶୃଙ୍ଖଳରେ ବନ୍ଧା ହୋଇ ରହିବେ କିପରି ?

ଫ୍ରାନ୍‌ସର ପାଗଳ ରାଜା ଚାର୍ଲସ ମରିଯାଆନ୍ତେ, ଫରାସୀମାନେ ତାଙ୍କ ପୁଅ ଡଫିନଙ୍କୁ ୭ମ ଚାର୍ଲସରୂପେ ରାଜା କଲେ । ଏଥିରେ ପୁଣି ଯୁଦ୍ଧ ଚାଲିଲା । ଇଂରେଜମାନେ ଥରକୁ ଥର ଫରାସୀମାନଙ୍କୁ ଯୁଦ୍ଧରେ ଜିଣିଲେ । ଲଏର ନଦୀର ଉତ୍ତରରେ ଥିବା ସମଗ୍ର ଫ୍ରାନ୍‌ସ ସେମାନେ-

ଅଧିକାର କରିନେଲେ । ଫରାସୀମାନେ ମଲ ପରି ହତୋତ୍ସାହ ହୋଇ-ପଡ଼ିଲେ; ତଥାପି ସେମାନେ ଲଢ଼ିବା ଛାଡ଼ିଲେ ନାହିଁ । ଗୋଟିଏ ଜାତିକୁ ପରାଧୀନ କରି ହାତରେ ରଖିବା ସହଜ ନୁହେ ।

ଡୋରେମି ଗ୍ରାମରେ ଏକ କୃଷକଘରେ ଜୁଏନ୍ ଡାର୍କ ନାମରେ ୧୭ ବର୍ଷର ଗୋଟିଏ ବାଳିକା ଥିଲା । ସେ ଇଂରେଜମାନଙ୍କ ଡରରେ ଥରକୁଥର ପଳାଇ ଯାଇ ଜଙ୍ଗଲରେ ଲୁଚୁଥିଲା । ଥରେ ଫେରିଆସି ଦେଖିଲା ଯେ ତା ଘରେ ନିଆଁ ଲଗାଇ ଇଂରେଜମାନେ ପାଉଁଶ କରି ଦେଇଛନ୍ତି । ଦେଶର ଏପରି ଦୁରବସ୍ଥା ଦେଖି ତା ପ୍ରାଣ କାନ୍ଦୁଥାଏ । ସେ କେତେ ଭାବେ, କେତେ ଚିନ୍ତା କରେ, କିପରି ଦେଶକୁ ଶତ୍ରୁ ହାତରୁ ଉଦ୍ଧାର କରିବ ?

ଦିନେ ଗ୍ରୀଷ୍ମକାଳର ଦୁଇପହରବେଳେ ସେ ଚିନ୍ତା କରୁଥିଲା । ଏତେ ଚିନ୍ତାରେ ସେ ନିବିଷ୍ଟ ଥିଲା ଯେ ତାର ମନେ ହେଲା, ଯେପରି କେହି ଦେବଦୂତ ତାକୁ କହୁଛନ୍ତି, "ଜେନ୍, ଉଠ୍, ଖଣ୍ଡା ଧର୍ ସେନାପତି ହୋ; ତୁ ଇଂରେଜମାନଙ୍କୁ ଜିଣିବୁ । ଫରାସୀ ରାଜାଙ୍କର ସିଂହାସନ ଫେରାଇ ଆଣିବୁ । ଫରାସୀ ଜାତିର ସ୍ୱାଧୀନତା ଉଦ୍ଧାର୍ କରିବୁ ।"

ଜେନ୍ ବାଳିକାର ମନ ଉଦ୍‌ବେଗରେ ଅକୁଳ ହେଲା । ସେ କଣ ସତେ ଦେଶ ଉଦ୍ଧାର କରି ପାରିବ ? ଦେବଦୂତ କଣ ସତେ ତାକୁ ଏକଥା କହିଲେ ? ଏ ସବୁ କଣ ସତ ? ସେ ସମ୍ଭାଳି ହୋଇ ରହି ପାରିଲା ନାହିଁ । ରାଜାଙ୍କ ଦରବାରକୁ ଗଲା । ନିଜେ ସେନାପତି ହେବ ବୋଲି ପ୍ରସ୍ତାବ କଲା । ଫରାସୀମାନେ ଏତେଥର ହାରିଥିଲେ ଯେ ବାଳିକାର କଥାରେ ସହଜରେ ରାଜି ହୋଇଗଲେ । ସେମାନେ କହିଲେ, "ଆମ୍ଭେମାନେ ଏତେଥର ହାରିଛୁ, ଆଉ ଥରେ ଏହି ବାଳିକା କଥାରେ ହାରିଲେ ବା କଣ ଅଧିକ ଗୋଟାଏ କ୍ଷତି ହୋଇ ଯିବ ?"

, ଜେନ୍ ଫରାସୀ ସେନା ଘେନି ଯୁଦ୍ଧ କଲା । ସେ ଧଳା-ଘୋଡ଼ାରେ ଚଢ଼ିଲା । ଫରାସୀମାନଙ୍କର ଜାତୀୟ ପତାକାରେ ସ୍ଥଳପଦ୍ମର ଚିହ୍ନ ଥାଏ । ସେହି ପତାକା ହାତରେ ଧରି ଯୁଦ୍ଧକ୍ଷେତ୍ରକୁ ଅଗେ ଅଗେ ଗଲା । ସେ ସୈନ୍ୟମାନଙ୍କୁ କେତେ ଉତ୍ସାହବାଣୀ ଶୁଣାଇଲା । ସେମାନଙ୍କୁ ନୂତନ ସାହସ ଦେଲା, ନୂତନ ବଳ ଦେଲା,




ଷଷ୍ଠ ହେନ୍‌ରି

ନୂତନ ତେଜରେ ସମସ୍ତଙ୍କୁ ମତାଇ ଦେଲା, ନୂଆ ପ୍ରାଣର ସ୍ରୋତ ସମସ୍ତଙ୍କ ଦେହରେ ଖେଳାଇ ଦେଲା । ମୃତ ଫରାସୀ ସୈନିକମାନେ ଏଥିରେ ଜାଗି ଉଠିଲେ । ସେମାନେ ମନେ କଲେ, ନିଜେ ବିଧାତା ଆସି ସେମାନଙ୍କର ନେତା ହୋଇଅଛନ୍ତି ।

କମେ ଇଂରେଜମାନେ ହଟିବାକୁ ଆରମ୍ଭ କଲେ । ଜେନ୍ ଅରଲିଅଁ ଉଦ୍ଧାର କଲ (୧୪୨୯) । ଚାର୍ଲସଙ୍କୁ ବିଜୟଦର୍ପରେ ରିମ୍‌ସ ନଗରକୁ ନେଲ । ସେଠାରେ ଆଡ଼ମ୍ବର ସହକାରେ ତାଙ୍କର ଅଭିଷେକ କରାଇଲ ।

ଇଂରେଜମାନେ ତାକୁ ଶେଷରେ ଧରିଲେ, ଡାଆଣୀ ବୋଲି ନିଆଁ ରେ ପୋଡ଼ିଦେଲେ ସତ, କିନ୍ତୁ ସେତେବେଳକୁ ଜେନର କାର୍ଯ୍ୟ ଶେଷ ହୋଇଥିଲ । ଫରାସୀମାନେ ତାହାର ଦୃଷ୍ଟାନ୍ତ ଭୁଲି ପାରିଲେ ନାହିଁ । ସେମାନେ ଗୋଟିଏ ଯୁଦ୍ଧ ପରେ ଅନ୍ୟ ଗୋଟିଏ ଯୁଦ୍ଧ ଜିଣିବାକୁ ଲଗିଲେ । ଇଂରେଜମାନେ ଇଞ୍ଚେ ଇଞ୍ଚେ କରି ସବୁ ହାରିଲେ । କେବଳ କ୍ୟାଲେ ସହରଟି ସେମାନଙ୍କ ହାତରେ ରହିଲ । ୧୪୫୩ ଖ୍ରୀ: ଅ:ରେ ସନ୍ଧି କରି ସେମାନେ ଇଂଲଣ୍ଡକୁ ଫେରିଗଲେ ।

---

## (୧୬)

## କୃଷକ ବିଦ୍ରୋହ

ତୃତୀୟ ଏଡୱାର୍ଡ଼ଙ୍କ ପରେ ବାକ୍‌ପ୍ରିନ୍‌ସଙ୍କ ପୁଅ ଦ୍ୱିତୀୟ ରିଚାର୍ଡ଼ ରାଜା ହେଲେ । ଶତବର୍ଷ ଯୁଦ୍ଧ ଫଳରେ ଦେଶରେ ନାନାପ୍ରକାର କର ବସୁଥିଲ । ୧୩୮୧ ଖ୍ରୀ:ଅ:ରେ ସରକାର ପୋଲ୍ ଟ୍ୟାକ୍‌ସ ବା ମୁଣ୍ଡକର ବସାଇଲେ । ଜଣେ ଧନୀଘରେ ବହୁତ ଧନ ଅଛି, କିନ୍ତୁ ଅଧିକ ଲୋକ ନାହାନ୍ତି, ସେ ତା ଘରର ଲୋକସଂଖ୍ୟା ହିସାବରେ କର ଦେବ । ଆଉ ଜଣେ ମଜୁରିଆ ମୂଲ ଲଗି ଖାଉଛି, ତାର ଖାଇବାକୁ କିଛି ନାହିଁ, କିନ୍ତୁ ତାର ଗୁଡ଼ିଏ କୁଟୁମ୍ବ । ସେ କୁଟୁମ୍ବର ପ୍ରତି ଲୋକ

ସର୍ବାପେକ୍ଷା ଧନୀ ପରି କର ଦେବ । ଘରେ କିଛି ନ ଥିବା ଲୋକ ପକ୍ଷରେ ଏହି କର କିପରି କଷ୍ଟକର ନ ହୋଇଥିବ? ଘରର ପ୍ରତି ଲୋକ ସକାଶେ ଜଣେ ମୂଲିଆ ଏକ ଶିଲିଂ ହିସାବରେ ଏହି କର ଦେଇ ପାରିବ କି ? ରାଜକର୍ମଚାରୀମାନେ ଘର ଘର ବୁଲି ଲୋକ ହିସାବ କଲେ, କାହାକୁ ଭୁଲରେ ବି ଏହି କର ଛାଡ଼ିଲେ ନାହିଁ ।

ବ୍ଲାକ୍‌ଡେଥ୍ ପ୍ଲେଗ୍ ଯୋଗୁଁ ଇଂଲଣ୍ଡରେ କୁଲିମଜୁରିଆର ଖୁବ୍ ଅଭାବ ପଡ଼ିଥିଲା । ତୁମ୍ଭେମାନେ ପୂର୍ବେ ଭିଲେନ୍‌ମାନଙ୍କ କଥା ପଢ଼ିଛ । ସେମାନେ ଅଧିକ ମଜୁରି ପାଇବେ ବୋଲି ସମସ୍ତେ ନିଜ ନିଜ ପ୍ରଭୁ-ମାନଙ୍କ ଘରୁ ପଳାଇଲେ । ତେଣେ ଚାଷୀମାନେ ଅଧିକ ଅଧିକ ମଜୁରି ଚଢ଼ାଇ ମାଡ଼ଗୋଳ କରି ସେମାନଙ୍କୁ କାମରେ ଲଗାଇଲେ । ଯେଉଁମାନେ ଭିଲେନ୍‌ମାନଙ୍କୁ କିଣି ରଖିଥିଲେ, ସେମାନେ ଏଥିରେ ଆପତ୍ତି କଲେ; ତେଣୁ ପାର୍ଲିଆମେଣ୍ଟ ସଭା ଗୋଟିଏ ଆଇନ କରି ଭିଲେନ୍‌ମାନଙ୍କୁ ପୂର୍ବ ପ୍ରଭୁମାନଙ୍କ ପାଖକୁ ଫେରିଯିବା ନିମନ୍ତେ ବାଧ୍ୟ କଲା । ଭିଲେନ୍‌ମାନେ ଏଥିରେ ଭାରି ଅସନ୍ତୁଷ୍ଟ ହେଲେ । ସେମାନେ କିପରି ମୁକ୍ତି ପାଇବେ, ସେ କଥା ଭାବିବାକୁ ଲାଗିଲେ ।

ଏତେବେଳେ ଇଂଲଣ୍ଡର ଅବସ୍ଥାରେ କି ପରିବର୍ତ୍ତନ ହୋଇ-ଥିଲା, ତାହା ଉପରେ କଥାରୁ କିଛି କିଛି ବୁଝାପଡ଼ୁଛି । ଏତେବେଳକୁ କେତେକ ପ୍ରଚାରକ ବାହାରିଲେ । ସେମାନେ ପ୍ରଚାର କଲେ ଯେ ପ୍ରତ୍ୟେକ ଲୋକ ସମାନ, ସମସ୍ତଙ୍କର ସବୁ ବିଷୟରେ ସମାନ ଅଧିକାର ରହିବା ଉଚିତ । ସମାଜରେ ନୋବ୍‌ଲ୍, ଭିଲେନ୍, ବଡ଼ ଲୋକ, ଦାସ ପ୍ରଭୃତି ଭେଦଭାବ ରହିବା ଉଚିତ ନୁହେ । ଉଇକ୍ଲିଫ୍, ଜନ୍ ବଲ୍ ପ୍ରଭୃତି ଏମାନଙ୍କର ନେତା ଥିଲେ ।

କନ୍ ବଲ୍ କହୁଥିଲେ:—

"When Adam delved and Eve span,
Who was then the gentleman ?"

(ଅର୍ଥାତ୍ ମନୁଷ୍ୟ ମାନେ ସମାନ; ଆଦମ ପିତା ଆଦମ୍ ଓ ମାତା ଇଭ୍ ଯେତେବେଳେ ନିଜ ହାତରେ ଭୂମି ଖନନ ପ୍ରଭୃତି କାର୍ଯ୍ୟ କରୁଥିଲେ, ସେତେବେଳେ ଭଦ୍ରଲୋକ କିଏ ଥିଲା ? )

ସେତେବେଳେ ମୁଣ୍ଡକର ସଂଗ୍ରାହକ ଜଣେ କର୍ମଚାରୀ ଜଣେ କୃଷକକନ୍ୟା ଉପରେ ଅତ୍ୟାଚାର କରିବାରୁ ଲୋକେ ଅତ୍ୟନ୍ତ ଉତ୍ତେଜିତ ହେଲେ । ଗୁଡ଼ାଏ ଲୋକ ଏକାଠି ହୋଇ ଲଣ୍ଡନ ଅଭିମୁଖରେ ଯାତ୍ରା କଲେ । ସେମାନେ ଠିକ୍ କଲେ ଯେ ସମସ୍ତ ଅନ୍ୟାୟ କର ଉଠାଇ ଦେବା ନିମନ୍ତେ ସରକାରଙ୍କୁ ଅନୁରୋଧ କରିବେ । କୃଷକମାନେ ଏହି ବିଦ୍ରୋହ ଆରମ୍ଭ କଲେ ଏବଂ ବାଟରେ ନିଷ୍କର୍ମା, ଦୁଷ୍କର୍ମୀ ପ୍ରଭୃତି ସମସ୍ତେ ତାଙ୍କ ସଙ୍ଗେ ମିଶିଗଲେ । ଏହି ବିଦ୍ରୋହକୁ "କୃଷକବିଦ୍ରୋହ" କହନ୍ତି ।

ବିଦ୍ରୋହୀମାନେ ଲଣ୍ଡନରେ ପହଞ୍ଚି ଘରମାନ ଭାଙ୍ଗିଦେଲେ, ପୋଡ଼ିଦେଲେ, ଲୁଣ୍ଠନ ଓ ଧ୍ୱଂସ ଆରମ୍ଭ କଲେ । ଜେଲ୍‌ଖାନା ଭାଙ୍ଗି ବନ୍ଦୀମାନଙ୍କୁ ଛାଡ଼ିଦେଲେ । କେଣ୍ଟର୍‌ବେରିର ପ୍ରଧାନ ଧର୍ମଯାଜକଙ୍କୁ ହତ୍ୟା କଲେ ।

ସେମାନଙ୍କ କାର୍ଯ୍ୟରେ ସମସ୍ତେ ଡରିଗଲେ । ପାର୍ଲିଆମେଣ୍ଟ ବ୍ୟସ୍ତ ହୋଇପଡ଼ିଲା, କିଛି କରି ପାରିଲା ନାହିଁ । ଶେଷରେ ବୁଦ୍ଧିମାନ୍ ରିଚାର୍ଡ ପଦାକୁ ବାହାରି ପଡ଼ିଲେ । ସେ ଘୋଡ଼ା ଉପରେ ଚଢ଼ି ଆସି କହିଲେ, "ପ୍ରିୟ ପ୍ରଜାଗଣ, କିଛି ଭୟ କର ନାହିଁ; ମୁଁ ତୁମ୍ଭମାନଙ୍କର ନେତା ହେବି । ତୁମ୍ଭେମାନେ କେବଳ ମୋତେ କହ, ତୁମ୍ଭେମାନେ କଣ ଚାହଁ ।" ରାଜାଙ୍କର ଏ କଥା ଶୁଣି ଅଶିକ୍ଷିତ ପ୍ରଜାମାନେ ଶାନ୍ତ ଓ ଆଶ୍ୱସ୍ତ

ହୋଇଗଲେ । ରାଜା ସେମାନଙ୍କୁ ନାନାପ୍ରକାର ପ୍ରବୋଧ ଦେଲେ ଏବଂ ସବୁ ଅଭିଯୋଗ ଶୁଣିବେ ବୋଲି କହି ବିଦାୟ କରିଦେଲେ ।

ପାର୍ଲିଆମେଣ୍ଟ ଅବସର ପାଇଲା ଏବଂ ବିଦ୍ରୋହ ଦମନ କରିବା ନିମନ୍ତେ ଯୋଗାଡ଼ କଲା । ବିଦ୍ରୋହୀ ନେତାମାନଙ୍କୁ ଧରପଗଡ଼ କରି ସେମାନଙ୍କୁ କଠିନ ଦଣ୍ଡ ଦେଲା । ରାଜାଙ୍କ କଥା ଶୁଣୁଛି କିଏ ? ବିଦ୍ରୋହ ତା ମନକୁ ଲିଭିଗଲା । କିନ୍ତୁ ଫଳ ହେଲା ନାହିଁ । କେବଳ ଲୋକେ ବୁଝିଲେ, ଭିଲେନ୍‌ମାନଙ୍କଠାରୁ ଆଉ ବଳାତ୍କାର କରି କାର୍ଯ୍ୟ କିମ୍ବା ମୂଲ ନେଇ ହେବ ନାହିଁ । ସେମାନେ ସମସ୍ତେ ଭିଲେନ୍‌ମାନଙ୍କୁ କ୍ରମେ କ୍ରମେ ମୁକ୍ତ କରିଦେଲେ । ଶେଷରେ ପାର୍ଲିଆମେଣ୍ଟ ଏ ବିଷୟରେ ଆଇନ ମଧ୍ୟ ଜାରି କଲା ।

ରିଚାର୍ଡଙ୍କ କୃଷକବିଦ୍ରୋହ ବେଳର ସାହସ ଦେଖି ଲୋକେ ମନେ କରିଥିଲେ ଯେ, ସେ ବଡ଼ ହେଲେ ଭଲ ଶାସନ କରିବେ; କିନ୍ତୁ ତାହାର ଓଲଟା ହୋଇଥିଲା । ସେ ଦିନେ ପାର୍ଲିଆମେଣ୍ଟକୁ କହିଲେ, "ଆଇନ ମୋ ମୁହଁରେ, ମୋ ମନ ଭିତରେ ଅଛି । ମୁଁ ତାହା ମନ ମୁତାବକ୍ ଭାଙ୍ଗି ଗଢ଼ି ପାରିବି ।" ସତକୁ ସତ ସେ ସେହିପରି କଲେ । ଯେଉଁ ଉଭକ୍‌ମାନଙ୍କ ପରି ଲୋକଙ୍କର ଭୂମିବୃତ୍ତିସବୁ ଛଡ଼ାଇ ନେଲେ, ସେମାନଙ୍କୁ ରାଜ୍ୟରୁ ନିର୍ବାସିତ କଲେ । ଲୋକେ ଆଉ ଏତେ ଅତ୍ୟାଚାର ସହି ପାରିଲେ ନାହିଁ । ସମସ୍ତେ ମିଶି ତାଙ୍କୁ ସିଂହାସନରୁ ତଡ଼ି ଦେଇଥିଲେ ।

---

(୧୬)

## ସାମାଜିକ ଅବସ୍ଥାର ପୂର୍ବାନୁବୃତ୍ତି

ପୂର୍ବକାଳରେ ଦୁଇ ଶ୍ରେଣୀର ଲୋକ ଥିଲେ । ଗୋଟିଏ ଶ୍ରେଣୀର ଜମିବାଡ଼ି କିଛି ନ ଥିଲା । ଏମାନେ ଅନ୍ୟଘରେ କ୍ରୀତଦାସ ପରି



ରହୁଥିଲେ କିମ୍ବା ମୂଲ୍ ମଜୁରି ଲାଗି ପେଟ ପୋଷୁଥିଲେ; ଅନ୍ୟ ଶ୍ରେଣୀର ଜମିବାଡ଼ି ଥିଲା ଏବଂ ସେମାନେ ସ୍ୱାଧୀନ ଥିଲେ । ଯେଉଁ-ମାନଙ୍କର ସେତେବେଳର ୨୦ ପାଉଣ୍ଡ ମୂଲ୍ୟରୁ ଅଧିକ ଜମି ଥିଲା, ସେମାନେ ସମସ୍ତେ ନାଇଟ୍ ହେଉଥିଲେ । ରାଜା ହେଉ, ଅର୍ଲ ହେଉ, ବେରନ୍ ହେଉ, ନୋବଲ୍ ହେଉ, ଆଠ ବର୍ଷ ବୟସ ହେଲେ ପୁଅକୁ ଅନ୍ୟ ଜଣେ ନୋବଲ୍‌ର ଘରକୁ ପଠାଇ ଦେଉଥିଲା । ପୁଅ ତା ଘରେ ଚାକର ଭଳି କାର୍ଯ୍ୟ ଶିକ୍ଷା କରୁଥିଲା । ଘୋଡ଼ା ଚଢ଼ିବା, କୁସ୍ତି କରିବା, ସ୍ତ୍ରୀ ଓ ପୁରୁଷଙ୍କୁ ସଦାଚାର ଦେଖାଇବା ଶିକ୍ଷା କରୁଥିଲା । ଏହି ଶିକ୍ଷା ସରିଲେ, ଜଣେ ନାଇଟ୍ ତାକୁ ନାଇଟ୍ ଉପାଧି ଦେଉଥିଲା ଏବଂ ତା ନିଜ ଘରକୁ ପଠାଇ ଦେଉଥିଲା ।

ଅଶ୍ୱାରୋହୀ ଓ ଧନୁର୍ଦ୍ଧାରୀ ଯୋଦ୍ଧାଙ୍କୁ ନେଇ ଇଂରେଜସେନା ବିଶେଷତଃ ଗଠିତ ହେଉଥିଲା । ଅଶ୍ୱାରୋହୀମାନେ ଦେହରେ ଓ ମୁଣ୍ଡରେ ଲୌହନିର୍ମିତ ଆବରଣ ବାସାଞ୍ଜ ପିନ୍ଧୁଥିଲେ । ଅସି ଓ ବର୍ଚ୍ଛା ନେଇ ଯୁଦ୍ଧ କରୁଥିଲେ । ଧନୁର୍ଦ୍ଧାରୀମାନେ ପାଦରେ ଚାଲି ଯୁଦ୍ଧ କରୁ-

ଥିଲେ । ଦେହରେ ଚମଡ଼ାର କୁରୁତା ଓ ମୁଣ୍ଡରେ ଲୁହାର ଶିରସ୍ତ୍ରାଣ ପିନ୍ଧୁଥିଲେ । ଏମାନଙ୍କର ଧନୁ ଖୁବ୍ ଦୀର୍ଘ ଥିଲା । କଟିରେ ଗୁଚ୍ଛ କରି ଶର ବାନ୍ଧୁଥିଲେ । ସେମାନେ ୩୦୦ ଗଜ ଦୂରରୁ ଲକ୍ଷ୍ୟ ଠିକ୍ ରଖି ଶର ମାରି ପାରୁଥିଲେ । ପ୍ରତି ରବିବାର ଦିନ ଦୁଇପ୍ରହର ବେଳେ ପ୍ରତି ଗାଁର ପଡ଼ିଆରେ ଲୋକେ ଧନୁର ଚାଳନା ଶିଖୁଥିଲେ ।

ଦେଶରେ ସର୍ଫ୍ ଓ ଭିଲେନ୍ ଦୁଇ ପ୍ରକାର ଦାସ ଥିଲେ । ସେମାନେ ଅକ୍ଷର କଣ ଜାଣୁ ନ ଥିଲେ । ଭିଲେନ୍‌ମାନେ ସପ୍ତାହରେ ତିନି ଚାରି ଦିନ ଏବଂ ସର୍ଫ୍‌ମାନେ ସର୍ବଦା ପ୍ରଭୁର ମଜୁରି ଲାଗୁଥିଲେ । ସେମାନେ ପ୍ରଭୁର ସେହି ଜମି ଛାଡ଼ି କୁଆଡ଼େ ଯାଇ



ଜମି ଚଷିବା

ପାରୁ ନ ଥିଲେ । ପ୍ରଭୁ ତାର ଜମିଟିକୁ ଅନ୍ୟକୁ ବିକି ଦେଲେ, ତାହା ସଙ୍ଗେ ସର୍ଫ୍ ଓ ଭିଲେନ୍ ମଧ୍ୟ ବିକ୍ରୀତ ହେଉଥିଲା ।

କ୍ରମେ ଅବସ୍ଥାର ପରିବର୍ତ୍ତନ ହେଲା । ବ୍ଲାକ୍‌ଡେଥ୍ ଲୋକଙ୍କର ମୃତ୍ୟୁ ଓ ଦାସମାନଙ୍କ ଭାଗ୍ୟ ଫିଟାଇଦେଲା । ମଜୁରିର ଦାମ ଚଢ଼ିଲା । ଦାସମାନେ ପ୍ରଭୁମାନଙ୍କୁ ଛାଡ଼ି ପଳାଇଲେ । କୌଣସି ଏକ ସହରରେ ବର୍ଷେ ରହି ପାରିଲେ, ସେମାନଙ୍କର ଦାସବୃତ୍ତିରୁ ମୁକ୍ତି ପାଇଲେ ।

ମାଲିକମାନେ ବୁଝିଲେ ଯେ, ବାଧ୍ୟ କଲେ କେହି କାମ କରନ୍ତି ନାହିଁ । ତେଣୁ ସେମାନେ ଅଧିକ ମୂଲ୍ୟମଜୁରି ଦେଲେ ।

ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଇଂଲଣ୍ଡରେ ଖୁବ୍ ପଶମ ବାଣିଜ୍ୟ ଚାଲିଥିଲା । ପଶମ ଫ୍ଲେଣ୍ଡାରକୁ ଯାଏ ଏବଂ ସେଠାରୁ ବସ୍ତ୍ର ବୁଣା ହୋଇ ଆସେ । ଏଥିରେ ଇଂଲଣ୍ଡ ଖୁବ୍ ଧନଶାଳୀ ହୋଇଥିଲା ।

ସହରବାସୀମାନେ ବ୍ୟବସାୟ ବାଣିଜ୍ୟ କରି ବହୁତ ଧନ ଉପାର୍ଜନ କରିଥିଲେ । ବଣିକ ଓ କାରିଗରମାନେ ସଂଘମାନ ଗଢ଼ିଥିଲେ । ଏହି ସଂଘମାନେ ରୋଗୀ, ବିଧବା, ଅନାଥମାନଙ୍କୁ ସାହାଯ୍ୟ କରୁଥିଲେ ଏବଂ ନିଜ ନିଜ ଉନ୍ନତି କରିବା ନିମନ୍ତେ ସହଯୋଗ କରୁଥିଲେ ।

ବ୍ୟବସାୟ ଶିଖିବା ନିମନ୍ତେ ସ୍କୁଲ୍ ନ ଥିଲା । ଜଣେ ବ୍ୟବସାୟୀ ବା କାରିଗର ଅନ୍ୟ ଜଣେ ବ୍ୟବସାୟୀ ବା କାରିଗର ପାଖରେ ରହି ସାତ ବର୍ଷ ଶିକ୍ଷା କରୁଥିଲା । ଶିକ୍ଷାନବିସ୍ ଭାବରେ ସାତ-ବର୍ଷ ପରେ ଯଥେଷ୍ଟ ରୋଜଗାର କରି ପାରିଲେ ସେ ସ୍ୱାଧୀନ ଭାବରେ ବ୍ୟବସାୟ କରି ପାରୁଥିଲା ।

ଏହି ସମୟ ପର୍ଯ୍ୟନ୍ତ ବଡ଼ଲୋକମାନେ ଫରାସୀ ଭାଷାରେ କଥୋପକଥନ କରିବାକୁ ଭାରି ପସନ୍ଦ କରୁଥିଲେ । ଅଦାଲତରେ ମଧ୍ୟ ଫରାସୀ ଭାଷା ବ୍ୟବହୃତ ହେଉଥିଲା । କିନ୍ତୁ ଏହି ସମୟରେ ଲୋକେ ଫରାସୀ ଭାଷା ଛାଡ଼ି ଇଂରାଜୀ ଭାଷା ବ୍ୟବହାର କଲେ, ଇଂରାଜୀରେ ପୋଥିପତ୍ର ଲେଖିଲେ ଏବଂ ଅଦାଲତରେ ଇଂରାଜୀ ଭାଷାର ପ୍ରଚଳନ ମଧ୍ୟ ହେଲା । ବିଖ୍ୟାତ କବି ଚସର ତାଙ୍କର "କେଣ୍ଟାର୍‌ବେରି ଟେଲ୍‌ସ" ନାମକ ପୁସ୍ତକ ଇଂରାଜୀରେ ଲେଖି-

ଥିଲେ । ଜନ୍ ଓଇକ୍ଲିଫ୍ ବାଇବଲକୁ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ ।

ଜନ୍ ଓଇକ୍ଲିଫ୍ ଚର୍ଚ୍ଚ ବିରୋଧରେ ପ୍ରଚାର କରିଥିଲେ । ସେ କହିଲେ ଯେ, ଯୀଶୁ ଖ୍ରୀଷ୍ଟ ଦରିଦ୍ର ଥିଲେ ଏବଂ ଜଗତରେ ଧର୍ମପ୍ରଚାର କରିଥିଲେ । ଯାଜକମାନେ ସେହିପରି ଦରିଦ୍ର ହୋଇ ରହନ୍ତୁ ଏବଂ ନିଜ କାର୍ଯ୍ୟ କରନ୍ତୁ । ସେମାନଙ୍କ ହାତରେ ଅଧିକ ଧନସମ୍ପତ୍ତି ରହୁଥିବାରୁ ସେମାନେ ଅଳସୁଆ ଓ ବିଳାସୀ ହୋଇ ପଡ଼ୁଅଛନ୍ତି, ନିଜ କାମ ଠିକ୍‌ରୂପେ କରୁ ନାହାନ୍ତି । ତାହାଙ୍କର ଏହି ପ୍ରଚାରରେ ଯାଜକମାନଙ୍କର ଖ୍ୟାତି ବହୁତ କମି ଯାଇଥିଲା । ଅନେକ ଲୋକ ଓଇକ୍ଲିଫଙ୍କର ଶିଷ୍ୟ ହେଲେ ଏବଂ ତାହାଙ୍କର ପ୍ରଚାରରେ ସାହାଯ୍ୟ କଲେ । ଏମାନଙ୍କୁ ଲଲାର୍ଡ଼ କହାଯାଉଥିଲା । ସରକାର ଆଇନ କରି ଲଲାର୍ଡ଼ମାନଙ୍କୁ ପୋଡ଼ି ମାରି ଦେବାକୁ ବାଧ୍ୟ ହୋଇଥିଲା ।

---

( ୧୮ )

## ଗୋଲାପ ଯୁଦ୍ଧରେ ଦେଶର ଦୁର୍ଗତି

ତୁମ୍ଭେମାନେ ଆଗରୁ ପଢ଼ିଛ, ଷଷ୍ଠ ହେନ୍‌ରୀଙ୍କ ରାଜତ୍ୱରେ ଶତବର୍ଷ ଯୁଦ୍ଧ ଶେଷ ହୋଇଥିଲା । ଶତ ବର୍ଷ ଯୁଦ୍ଧରେ ଇଂଲଣ୍ଡ ଅକାରଣରେ ଧନଜନକ୍ଷୟ କରିଥିଲା । ସେତେବେଳେ ହେନ୍‌ରୀ ନାବାଳକ ଥିଲେ । ତାଙ୍କ ପକ୍ଷରୁ ୟର୍କର ଡିଉକ୍ ରିଚାର୍ଡ ରାଜ୍ୟ ଚଳାଉଥିଲେ । ହେନ୍‌ରୀ ଯେତେବେଳେ ସାବାଳକ ହେଲେ, ତାଙ୍କର

୬୪




ଷଷ୍ଠ ହେନ୍ରି

ଉନ୍ମାଦ ରୋଗ ଦେଖାଗଲା । ରାଜାଙ୍କର ଏପର ଅବସ୍ଥା ଘଟନ୍ତେ, ରାଜ୍ୟରେ ନାନା ଅଶାନ୍ତି ଦେଖାଦେଲା । ନୋବଲ୍ ମାନେ ଯଥେଚ୍ଛ ଆଚରଣ ଦେଖାଇଲେ । ପରସ୍ପର ମଧ୍ୟରେ କଳି ଓ ଯୁଦ୍ଧ ଆରମ୍ଭ କଲେ । ରକ୍ତପାତ, ଗୋଳମାଳ, ଅଶାନ୍ତି ଚାରିଆଡ଼େ ବ୍ୟାପିଲା । ଷ୍ଟେଫେନଙ୍କ ରାଜତ୍ୱ ପୁଣି ଥରେ ଇଂଲଣ୍ଡରେ ଆସି ଉପସ୍ଥିତ ହେବା ପରି ଜଣାଗଲା ।

## ଲାଙ୍କାଷ୍ଟର ଓ ୟର୍କ ବଂଶ

### ତୃତୀୟ ଏଡ୍‌ୱାର୍ଡ଼

- ୧ ବ୍ଲାକ୍‌ପ୍ରିନ୍‌ସ
  - ୨ୟ ରିଚାର୍ଡ
- ୨ ଲାୟନେଲ
  - ଫିଲିପା
    - ମାର୍ଚ୍ଚି ମାର୍ଚ୍ଚ
      - ଏଡ୍‌ମଣ୍ଡ
      - ଏନ୍ (ରିଚାର୍ଡ ଆର୍ଲ ଅବ୍ କେମ୍ବ୍ରିଜଙ୍କୁ ବିବାହ କଲେ)
- ୩ ଜନ ଅବ୍‌ଗଣ୍ଟ
  - ଚତୁର୍ଥ ହେନ୍ରୀ
    - ୫ମ ହେନ୍ରୀ
      - ଷଷ୍ଠ ହେନ୍ରୀ
        - ଏଡ୍‌ୱାର୍ଡ
- ୪ ଗ୍ଲସେଷ୍ଟର
- ୫ ଏଡ୍‌ମଣ୍ଡ ୟର୍କ
  - ରିଚାର୍ଡ ଆର୍ଲ ଅବ୍ କେମ୍ବ୍ରିଜ
    - ରିଚାର୍ଡ ଡ୍ୟୁକ୍ ଅବ୍ ୟର୍କ
      - ଚତୁର୍ଥ ଏଡ୍‌ୱାର୍ଡ
        - ୫ମ ଏଡ୍‌ୱାର୍ଡ
        - ରିଚାର୍ଡ
        - ଏଲିଜାବେଥ୍ (ସପ୍ତମ ହେନ୍ରୀଙ୍କୁ ବିବାହ କଲେ)
          - **ଅଷ୍ଟମ ହେନ୍ରୀ**
      - ୩ୟ ରିଚାର୍ଡ
      - ଜର୍ଜ

ପୂର୍ବପୃଷ୍ଠାରେ ଥିବା ବଂଶବୃକ୍ଷକୁ ଦେଖ । ଷଷ୍ଠ ହେନ୍ରି ତୃତୀୟ ଏଡ଼ୱାର୍ଡଙ୍କ ତୃତୀୟ ପୁତ୍ରର ବଂଶଧର । ସେ ନାବାଳକ ଥିବାବେଳେ ତୃତୀୟ ଏଡ୍‌ୱାର୍ଡ଼ଙ୍କ ପଞ୍ଚମ ପୁତ୍ରର ବଂଶଧର ରିଚାର୍ଡ଼ ଡ୍ୟୁକ୍ ଅବ ୟର୍କ ଶାସନକାର୍ଯ୍ୟ ଚଳାଉଥିଲେ । ତାଙ୍କ ମାତା ଏନ୍ ସେହି ତୃତୀୟ ଏଡ୍‌ୱାର୍ଡ଼ଙ୍କ ୨ୟ ପୁତ୍ରର ପ୍ରପୌତ୍ରୀ ଥିଲେ; ସୁତରାଂ ରିଚାର୍ଡ଼ ତୃତୀୟ ଏଡୱାର୍ଡ଼ଙ୍କ ୨ୟ ଓ ୫ମ ଉଭୟ ଶାଖାରୁ ସିଂହାସନର ହକଦାର ଥିଲେ । ଫଳରେ ଷଷ୍ଠ ହେନ୍ରିଙ୍କ ଅପେକ୍ଷା ସିଂହାସନ ସକାଶେ ତାଙ୍କର ଅଧିକ ଦାବି ଥିଲା । ହେନ୍ରି ନାବାଳକ ଥିବା-ବେଳେ ସେ ମୁକୁଟବିହୀନ ରାଜା ପରି ରହିଥିଲେ ।

ହେନ୍ରି ଯେତେବେଳେ ଉନ୍ମାଦଗ୍ରସ୍ତ ହେଲେ, ତାଙ୍କୁ ସୁଯୋଗ ମିଳିଗଲା । ରାଜ୍ୟରେ ତ ଘୋର ଅଶାନ୍ତି ଲାଗିଲା, ପ୍ରଜାମାନଙ୍କ ମନରେ ଏପରି ଅବସ୍ଥାରେ ଶାନ୍ତି ରହିବ କାହୁଁ ? ଏହିପରି ଅବସ୍ଥାରେ ସେ ସିଂହାସନ ସକାଶେ ଦାବି କରି ବସିଲେ । ଶେଷରେ ପାର୍ଲିଅମେଣ୍ଟ ସ୍ଥିର କଲା ଯେ ହେନ୍ରିଙ୍କ ଉନ୍ମାଦ ଅବସ୍ଥାରେ ରିଚାର୍ଡ଼ ଶାସନ କାର୍ଯ୍ୟ ଚଳାଇବେ ଏବଂ ତାଙ୍କ ମୃତ୍ୟୁ ପରେ ରାଜା ହେବେ ।

ହେନ୍ରିଙ୍କ ସ୍ତ୍ରୀ ମାର୍ଗାରେଟ୍ ପାର୍ଲିଅମେଣ୍ଟର ଏହି ନିଷ୍ପତ୍ତି ମାନିଲେ ନାହିଁ । ସେ ଯୁଦ୍ଧକରି ରିଚାର୍ଡ଼ଙ୍କୁ ବଧ କଲେ । ରିଚାର୍ଡ଼ଙ୍କ ପୁତ୍ର ଏଡ୍‌ୱାର୍ଡ଼ ତା ପରେ ମାର୍ଗାରେଟଙ୍କ ସଙ୍ଗେ ଯୁଦ୍ଧ କଲେ । ସେ ହେନ୍ରି, ମାର୍ଗାରେଟ ଓ ତାଙ୍କ ପୁତ୍ର ଏଡୱାର୍ଡ଼ଙ୍କୁ ସ୍କଟଲଣ୍ଡକୁ ତଡ଼ି ଦେଲେ ଏବଂ ଚତୁର୍ଥ ଏଡ୍‌ୱାର୍ଡ଼ ରୂପେ ରାଜା ହେଲେ । ଏଡୱାର୍ଡ଼ଙ୍କ ମାମୁଁ ପୁଅ ଉଆରଉଇକ୍ ଏହି ଯୁଦ୍ଧମାନଙ୍କରେ ଏଡୱାର୍ଡ଼ଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ତାଙ୍କର ୧୫୦ଟି ମେନର ବା ଗ୍ରାମ ଥିଲା । ସେ


ଚତୁର୍ଥ ଏଡବାର୍ଡ଼

୫୦୦ ଜଣ ଅନୁଚର ରଖିଥିଲେ । ଧନେ ସେ ସକାଳୁ ପ୍ରାତ-ର୍ଭୋଜନ ପାଇଁ ଅଠଟା ଗୋରୁ ହଣାଇଥିଲେ । ତାଙ୍କ ଘରକୁ ଗୋଟିଏ "ସଦାବ୍ରତ" ବା "ଅନ୍ନ ସତ୍ର" ବୋଲି କହା-ଯାଇ ପାରେ । ରାଜ୍ୟରେ ତାଙ୍କର ଏତେ କ୍ଷମତା ଥିଲା ଯେ ସେ ଏଡ୍-ବାର୍ଡ଼ଙ୍କୁ ରାଜସିଂହା-ସନରେ ବସାଇଲେ; କେବଳ ଏତିକି ନୁହେ, ନିଜକୁ "ରାଜନିର୍ମାତା" ବୋଲି ପରିଚୟ ଦେଲେ ।

ୱାରଉଇକ୍ ଏବେ ଏଡବାର୍ଡ଼ଙ୍କୁ ନିଜ ଇଚ୍ଛାମତେ ପତ୍ନୀ ଗ୍ରହଣ କରିବାକୁ ଦେଲେ ନାହିଁ । ଏଡ୍‌ବାର୍ଡ଼ ତାହା ନ ମାନିବାରୁ ସେ ବିଦ୍ରୋହ କଲେ । ରାଜା ତାଙ୍କୁ ବିଦ୍ରୋହୀ ବୋଲି ଘୋଷଣା କଲେ । ତେଣୁ ୱାରଉଇକ୍ ଫ୍ରାନ୍‌ସକୁ ଯାଇ ସେଠାରୁ ମାର୍ଗାରେଟଙ୍କୁ ଧରି ଇଂଲଣ୍ଡରେ ପହଞ୍ଚିଲେ ଏବଂ ଏଡ୍‌ବାର୍ଡ଼ଙ୍କୁ ଫ୍ରାନ୍‌ସକୁ ତଡ଼ିଦେଲେ । ସେ ବୃଦ୍ଧ ସମ୍ରାଟ୍ ହେନ୍‌ରୀଙ୍କୁ ପୁଣି ସିଂହାସନରେ ବସାଇଲେ । ଦେଖାଗଲା, ସେ ପ୍ରକୃତରେ ରାଜନିର୍ମାତା ହୋଇଛନ୍ତି ।

ଇଚ୍ଛାକଲେ ଜଣକୁ ତଡ଼ି ଅନ୍ୟ ଜଣକୁ ସିଂହାସନରେ ବସାଇ ପାରୁଥିଲେ ।

ଯାହା ହେଉ, ଏଡ଼୍‌ୱାର୍ଡ଼ ନୂଆ ସୈନ୍ୟ ସଂଗ୍ରହ କରି ଫ୍ରାନ୍‌ସରୁ ଫେରିଲେ । ହେନ୍ରି ନିହତ ହେଲେ, ମାର୍ଗାରେଟ୍ ବନ୍ଦୀ ହେଲେ ଏବଂ ଅନୁମତି ନେଇ ଫ୍ରାନ୍‌ସକୁ ଗଲେ । ୱାରୱିକ୍ ଓ ହେନ୍ରିଙ୍କ ପୁତ୍ର ଏଡ଼ୱାର୍ଡ଼ଙ୍କ ନିର୍ଦ୍ଦୟଭାବରେ ହତ୍ୟା କରାଗଲା । ଏଡ଼୍‌ୱାର୍ଡ଼ ୧୪୭୧ ଖ୍ରୀ: ଅ: ରେ ଶାନ୍ତିରେ ପୁଣି ରାଜା ହେଲେ ।

ଚତୁର୍ଥ ଏଡ଼୍‌ୱାର୍ଡ ୧୪୮୩ ଖ୍ରୀ: ଅ: ରେ ମଲେ ଏବଂ ତାଙ୍କ ନାବାଳକ ପୁତ୍ର ୫ମ ଏଡ଼୍‌ୱାର୍ଡ ରାଜା ହେଲେ । କିନ୍ତୁ ତାଙ୍କ ପିତୃବ୍ୟ ତାଙ୍କୁ ଓ ତାଙ୍କ ଭାଇଙ୍କୁ ଗୋପନରେ ବଧ କରି ନିଜେ ତୃତୀୟ ରିଚାର୍ଡ଼ରୂପେ ରାଜା ହେଲେ । ଶିଶୁହନ୍ତା ରିଚାର୍ଡ଼ଙ୍କୁ କେହି ସୁଖ ପାଉଁଲେ ନାହିଁ । ରାଜ୍ୟର ଚାରିଆଡ଼େ ବିଦ୍ରୋହ ଦେଖାଗଲା । ହେନ୍ରି ଟ୍ୟୁଡର ଏହି ବିଦ୍ରୋହର ନେତା ହେଲେ ଏବଂ ରିଚାର୍ଡ଼ଙ୍କୁ ଯୁଦ୍ଧରେ ନିହତ କଲେ । ଏହାପରେ ଗୋଲାପ ଯୁଦ୍ଧ ଶେଷ ହେଲା (୧୪୮୫) ଏବଂ ହେନ୍ରି ଇଂଲଣ୍ଡର ରାଜସିଂହାସନରେ ବସି ସପ୍ତମ ହେନ୍ରିରୂପେ ରାଜତ୍ୱ କଲେ ।

---

## (୧୯)

## ସପ୍ତମ ହେନ୍ରି ଓ ଅଷ୍ଟମ ହେନ୍ରି

ସପ୍ତମ ହେନ୍ରି ରାଜାହୋଇ ବେରନ୍‌ମାନଙ୍କୁ ଦମନ କରିବା ସକାଶେ କୃତସଙ୍କଳ୍ପ ହେଲେ । ବେରନ୍‌ମାନେ ରାଜ୍ୟରେ ସମସ୍ତ ପ୍ରକାର ବିଶୃଙ୍ଖଳା ଓ ଅଶାନ୍ତି ଜନ୍ମାଇବାର କାରଣ ହୋଇଥିଲେ

ଇଂରେଜମାନେ ସେମାନଙ୍କ କ୍ଷମତା ଓ ଅତ୍ୟାଚାରରେ ଏପରି ବ୍ୟତିବ୍ୟସ୍ତ ହୋଇଥିଲେ ଯେ ସେମାନେ ଜଣେ ବଳିଷ୍ଠ ରାଜାଙ୍କୁ ଗୁହିଁ ବସିଥିଲେ । ହେନ୍ରି ଭଲରୂପେ ବୁଝିଥିଲେ ଯେ ବେରନ୍‌ମାନଙ୍କୁ ଦମନ ନ କଲେ ରାଜ୍ୟରେ ଶାନ୍ତିଶୃଙ୍ଖଳା ଆସିବ ନାହିଁ ।

– ହେନ୍ରି ଆହୁରି ବୁଝିଥିଲେ ଯେ, ବଳ ଆଣିବାକୁ ହେଲେ, ତାଙ୍କୁ ପ୍ରଥମେ ଅର୍ଥସଞ୍ଚୟ କରିବାକୁ ହେବ । ତାଙ୍କର ରାଜକୋଷରେ ଟଙ୍କା ନ ଥିଲେ ସେ କିଛି କରି-ପାରିବେ ନାହିଁ । ଏଥି-ସକାଶେ ସେ ପାର୍ଲିଆମେଣ୍ଟ ନାନା ଦଗରେ ଟଙ୍କା ଜମା କରିବାରେ ଲାଗିପଡ଼ିଲେ ।



ସପ୍ତମ ହେନ୍ରି

ହେନ୍ରିଙ୍କର ମର୍ଟନ୍ ନାମରେ ଜଣେ ବୁଦ୍ଧିମାନ୍ ମନ୍ତ୍ରୀ ଥିଲେ । ସେ ବଣିକ-ମାନଙ୍କୁ ମୂଳଧନ ଟଙ୍କା କର୍ଜ ଦେଇ, ତାହାଙ୍କଠାରୁ ଲାଭ ନେବାକୁ ଲାଗିଲେ । ପ୍ରଜା-ମାନଙ୍କଠାରୁ ବଳ ପ୍ରୟୋଗ କରି କରଜ ଆଣିଲେ । ଏହି କରଜକୁ କିନ୍ତୁ ସେ କରଜ ବୋଲି ନ କହି "ସ୍ୱେଚ୍ଛାଦାନ" (Benevolence) ବୋଲି କହିଲେ । କରଜ ବୋଲି କହିଲେ ସୁଧ ଦେବାକୁ ହୁଏ; କିନ୍ତୁ ସୁଧ ଦେବା ଦୂରର କଥା ହେନ୍ରି ତାହାର ମୂଳ ମଧ୍ୟ ପରିଶୋଧ କରିବେ ବୋଲି ସ୍ୱପ୍ନରେ ଭାବୁ

ନ ଥିଲେ । କୌଣସି ପ୍ରକାରେ ଲୋକଙ୍କ ହାତରୁ ଟଙ୍କା ରାଜକୋଷକୁ ଆସୁ, ଏହାହିଁ ତାଙ୍କର ଅସଲ ମତଲବ ଥିଲା । ଏପରି ଟଙ୍କା କରଜ ଦେବାକୁ ବାଏ କାହିଁକି ରାଜି ହେବ ? ସୁତରାଂ କେହି ଦେବାକୁ ରାଜି ହେଉ ନ ଥିଲେ । ମୋର୍ଟନ୍ କଳୁଷ ଭାରି ଚାଲାକ ଲୋକ ଥିଲେ । ସେ ଆଡ଼ମ୍ବର ପ୍ରିୟ ପ୍ରଜାଙ୍କୁ କହୁଥିଲେ, "ତୁମ୍ଭେ ଆଡ଼ମ୍ବରରେ ଏତେ ଏତେ ପଇସା ଖର୍ଚ୍ଚ କରୁଛ, ଆଉ ରାଜାଙ୍କୁ ତହିଁରୁ କିଛି ଦେଇ ପାରିବ ନାହିଁ ? ନିଶ୍ଚୟ ପାରିବ, ଆଣ ଦିଅ ।" ପୁଣି ଉଣା ଉଣା ଖରଚ କରୁଥିବା ଲୋକଙ୍କୁ ଦେଖିଲେ କହୁଥିଲେ, "ତୁମ୍ଭେ ଅଳ୍ପ ଅଳ୍ପ ଖରଚ କରୁଛ । ଅତଏବ ନିଶ୍ଚୟ ବହୁତ ଟଙ୍କା ସଞ୍ଚି ରଖିଛ । ସେଥିରୁ କିଛି ରାଜାଙ୍କୁ ଦିଅ ।" ଏହି ଯୁକ୍ତିରେ ଧନୀ ଦରିଦ୍ର କେହି ମୋର୍ଟନଙ୍କ ହାବୁଡ଼ରୁ ରକ୍ଷା ପାଉ ନ ଥିଲେ ।

ଦୋଷୀ ଦେଖିଲେ ମାନେ ମୋର୍ଟନ୍ କେବଳ ଅର୍ଥଦଣ୍ଡ ଦେଉଥିଲେ । ରାଜକୋଷ ପୂର୍ଣ୍ଣ କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେ ବେରନ୍‌ମାନଙ୍କୁ ଗୋଇନ୍ଦା ବା ଅନୁଚର ରଖିବା ନିମନ୍ତେ ମନା କରିଥିଲେ । ଜଣେ ବେରନ୍ ତାଙ୍କ କଥା ମାନିଲେ ନାହିଁ । ସେ କଥା ହେନ୍ରି ଜାଣି ପାରିଲେ । ସେ ତାଙ୍କୁ ଡକାଇ କହିଲେ, "ଆପଣ ଗୋଇନ୍ଦା ରଖିଛନ୍ତି ? ହଉ, ମୋର କର୍ମଚାରୀମାନେ କାଲି ଆପଣଙ୍କ ସଙ୍ଗେ ଦେଖା କରିବେ ।" ତହିଁ ଆରଦିନ ହେନ୍ରି ଲୋକ ପଠାଇ ସେହି ବେରନଙ୍କ ପାଖୁ ଯଥେଷ୍ଟ ଜୋରିମାନା ଆଦାୟ କଲେ ।

ଏହିପରି ନାନା ଉପାୟରେ ହେନ୍ରି ବହୁତ ଟଙ୍କା ଜମା କଲେ । ତାଙ୍କୁ ଆଉ ଟଙ୍କା ସକାଶେ ପାର୍ଲିମେଣ୍ଟକୁ ଖୋସାମଦ କରିବାକୁ ହେଲା ନାହିଁ । ସେ ନିଜ ଉପରେ ନିଜେ ନିର୍ଭର କରି ଚାଲିଲେ । ତାଙ୍କର ଚବିଶ ବର୍ଷ ରାଜତ୍ୱ ମଧ୍ୟରେ ସେ କେବଳ ସାତଥର ପାର୍ଲିଅମେଣ୍ଟ ବସାଇଥିଲେ ।

ସ୍କଟ୍‌ଲଣ୍ଡ ସଙ୍ଗେ ଇଂଲଣ୍ଡ ସବୁଦିନ କଳି କରୁଥିଲା । ଏହି କଳି ମେଣ୍ଟାଇବା ଲାଗି ହେନ୍‌ରି ନିଜ କନ୍ୟାକୁ ସ୍କଟଲଣ୍ଡର ରାଜା ଚତୁର୍ଥ ଜେମ୍‌ସଙ୍କ ହାତରେ ଅର୍ପଣ କଲେ । ଏହି ଜେମ୍‌ସଙ୍କ ପଣନାତି ଷଷ୍ଠ ଜେମ୍‌ସ ପଛକୁ ଇଂଲଣ୍ଡର ରାଜା ହେବାରୁ ସ୍କଟଲଣ୍ଡ ଓ ଇଂଲଣ୍ଡ ଜଣେ ରାଜାଙ୍କ ଅଧୀନରେ ରହି ମିଶିଗଲା ।

ହେନ୍‌ରି ନିଜ ବଡ଼ ପୁଅ ଆର୍ଥରଙ୍କୁ ସ୍ପେନ ରାଜାଙ୍କ ଝିଅ କାଥେରାଇନଙ୍କ ସଙ୍ଗେ ବିବାହ ଦେଲେ ; କିନ୍ତୁ ଆର୍ଥର ଅଳ୍ପ ଦିନ ପରେ ମରିଗଲେ । ହେନ୍‌ରି ସ୍ପେନ୍ ସଙ୍ଗେ ବନ୍ଧୁତା ବଜାୟ ରଖିବେ ବୋଲି ଦ୍ୱିତୀୟ ପୁଅ ହେନ୍‌ରିଙ୍କ ସଙ୍ଗେ କାଥେରାଇନଙ୍କୁ ଧରି ଛନ୍ଦିଲେ । ବଡ଼ ଭାଇର ବିଧବା ସ୍ତ୍ରୀଙ୍କୁ ସାନ ଭାଇ ବିବାହ କରିବା ଖ୍ରୀଷ୍ଟାନ ଧର୍ମରେ ମନା ଅଛି । ତଥାପି ଏହି ବିବାହରେ ରୋମର ପୋପ୍ ହେନ୍‌ରିଙ୍କୁ ଅନୁମତି ଦେଇଥିଲେ ।

ହେନ୍‌ରି ୧୪୮୫ ଖ୍ରୀ: ଅ: ରେ ରାଜା ହୋଇ ୧୫୦୯ ଖ୍ରୀ:ଅ: ରେ ମରିଥିଲେ । ତାଙ୍କ ପରେ ତାଙ୍କ ଦ୍ୱିତୀୟ ପୁତ୍ର ଅଷ୍ଟମହେନ୍‌ରି ରୂପେ ସିଂହାସନରେ ବସିଲେ । ସେତେବେଳେ "ରାଜାଙ୍କ ବୟସ ୨୯, ରୂପ ପରମରମଣୀୟ, × × × ଖ୍ରୀଷ୍ଟାନମଣ୍ଡଳରେ ତାଙ୍କ ପରି ସୁନ୍ଦର ରାଜା ନ ଥିଲେ । ଫ୍ରାନ୍‌ସର ରାଜାଙ୍କଠାରୁ ମଧ୍ୟ ହେନ୍‌ରି ଅଧିକ ସୁନ୍ଦର ଥିଲେ । ତାଙ୍କ ଦେହ ସର୍ବାଙ୍ଗ ସୁନ୍ଦର ଓ ସୁଗଠିତ ଥିଲା । ଫ୍ରାନ୍‌ସର ରାଜା ଫ୍ରାନସିସଙ୍କ ଶ୍ମଶ୍ରୁ ଅଛି ଏହା ଶୁଣି ହେନ୍‌ରି ମଧ୍ୟ ଶ୍ମଶ୍ରୁ ଧାରଣ କଲେ । ତାଙ୍କ ଶ୍ମଶ୍ରୁ ଅଳ୍ପ ଲାଲ ଥିବାରୁ ସୁନା ପରି ଦେଖାଯାଉଥିଲା । ତାଙ୍କ ଦେହରେ ସମସ୍ତ ଭଲ ଗୁଣ ଥିଲା । ସେ ଭଲ ଗାଇ ପାରନ୍ତି; ଭଲ ରଚନା କରି ପାରନ୍ତି; ଘୋଡ଼ା ଚଢ଼ିବା ଓ ମଲ୍ଲଯୁଦ୍ଧ କରିବାରେ ସେ ଦକ୍ଷ ଥିଲେ । ସେ ଫରାସୀ, ଲାଟିନ୍ ଓ ସ୍ପେନୀୟ ଭାଷା କହି ପାରୁଥିଲେ ସେ ପ୍ରତ୍ୟହ ତିନି ଥର ପ୍ରାର୍ଥନା କରନ୍ତି ଏବଂ ଧର୍ମପ୍ରାଣ ଥିଲେ ।" ଖାଇସାରି ସେ ପଣ୍ଡିତ, କବି ଓ

୨।



ଅଷ୍ଟମ ହେନ୍‌ରୀ

ରାଜନୀତିଜ୍ଞମାନଙ୍କୁ ପାଖରେ ବସାଇ ଭଲ ଭଲ କଥାବାର୍ତ୍ତା କରୁଥିଲେ । ନିଜେ ବିଦ୍ୟାର ଆଦର କରୁଥିଲେ ଏବଂ ଅତି ବିଚକ୍ଷଣ ବୁଦ୍ଧିମାନ୍ ଥିଲେ ।

ଉଲ୍‌ସି ନାମରେ ଜଣେ ବଡ଼ ପଣ୍ଡିତ ସେତେବେଳେ ଇଂଲଣ୍ଡରେ ଥିଲେ । ସେ ପନ୍ଦର ବର୍ଷ ବୟସରେ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ବି. ଏ. ପାସ କରିଥିଲେ । ସେ ବିଦ୍ୟାର ବଡ଼ ଆଦର କରୁଥିଲେ ଏବଂ ଅନେକ ସ୍କୁଲ୍, କଲେଜ ବସାଇଥିଲେ । ହେନ୍‌ରି ଏହି ଉଲ୍‌ସିଙ୍କୁ ନିଜ ପ୍ରଧାନ ମନ୍ତ୍ରୀ କରିଥିଲେ । ଉଲ୍‌ସି ଜଣେ ବଣିକର ପୁଅ ଥିଲେ ।

ଉଲ୍‌ସି ଫ୍ରାନ୍‌ସ ସଙ୍ଗେ ଇଂଲଣ୍ଡର ବନ୍ଧୁତା ଦୃଢ଼ କରିବାକୁ ଦୁଇ ଦେଶର ରାଜାଙ୍କୁ ଗୋଟିଏ ସ୍ଥାନରେ ଭେଟ କରାଇଲେ ।


ଉଲ୍‌ସି

କାଳେ ଜାକଜମକରେ କେହି କାହାକୁ ବଳିବେ ଏଥିପାଇଁ ଦୁହେଁ ସେଠାରେ ପାଣି ପରି ଟଙ୍କା ଖରଚ କଲେ । ସେମାନେ ସେହି ପଣ୍ଡଆରେ ଏତେ ଅର୍ଥ ବ୍ୟୟ କଲେ ଯେ ସେଠାରେ ସେତିକ ଖର-ଚରେ ସୁନାର ବସ୍ତ୍ର ବିଛା ହୋଇ ପାରିଥାନ୍ତା । ଏଥି ସକାଶେ ଲୋକେ ତାକୁ "ସ୍ୱର୍ଣ୍ଣବସ୍ତ୍ର ପ୍ରାନ୍ତର" (The field of the cloth of Gold) ନାମ ଦେଇଛନ୍ତି । ସପ୍ତମ ହେନ୍‌ରି କେତେଡ଼ କଷ୍ଟରେ ଟଙ୍କା ସଞ୍ଚୟ କରିଥିଲେ । ସେ ଯଦି ବୃଥା ଆଡ଼ମ୍ବ-

ଉରେଁ ଓର୍ଥ ଏପରି ଭାବରେ ଖରଚ କରିବା ଦେଖିଥାନ୍ତେ, ଧୂଅଁକୁ କଣ ଲହୁଥାନ୍ତେ ?

ହେନ୍ରୀ ଅତ୍ୟନ୍ତ ଧର୍ମପ୍ରାଣ ଥିଲେ । ସେ ପୋପଙ୍କୁ ଖୁବ୍ ମାନୁଥିଲେ । ଏତେବେଳେ ଲୁଥର ବୋଲି ଜଣେ ବିପ୍ଳବୀ ପୋପଙ୍କ ବିରୁଦ୍ଧରେ ଏକ ନୂଆ ମତ ପ୍ରଚାର କରୁଥିଲେ । ସେ କଥା ଜାଣି ହେନ୍ରୀ ଲୁଥରଙ୍କ ମତ ଖଣ୍ଡନ କରି ଏକ ପୁସ୍ତକ ଲେଖିଥିଲେ । ଏହି ପୁସ୍ତକ ପଢ଼ି ପୋପ ଭାରି ସନ୍ତୁଷ୍ଟ ହେଲେ ଏବଂ ହେନ୍ରୀଙ୍କୁ "ଧର୍ମରକ୍ଷକ" (Defender of the faith) ଉପାଧି ଦେଇଥିଲେ । ଇଂରେଜ ରାଜାମାନେ ଏହି ଉପାଧିକୁ ଆଜି ପର୍ଯ୍ୟନ୍ତ ନିଜ ନାମ ସଙ୍ଗେ ବ୍ୟବହାର କରୁଅଛନ୍ତି ।

ହେନ୍ରୀ ନିଜ ବଡ ଭାଇଙ୍କ ଭାର୍ଯ୍ୟା କ୍ୟାଥେରାଇନଙ୍କୁ ବିବାହ କରିଥିଲେ । ଖ୍ରୀଷ୍ଟାନ ଧର୍ମରେ ଏପରି ବିବାହ ମନା । ପୋପ ଏହି ବିବାହଁ ସକାଶେ ବିଶେଷ ଧର୍ମାଜ୍ଞାଦ୍ୱାରା ଅନୁମତି ଦେଇଥିଲେ । ହେନ୍ରୀ କ୍ୟାଥେରାଇନଙ୍କୁ ନେଇ ଅଠରବର୍ଷ ଘର କଲେ । କିନ୍ତୁ ସେହି ଅଠରବର୍ଷ ଭିତରେ ସେମାନଙ୍କର କେବଳ ଗୋଟିଏ ଝିଅ ଜାତ ହୋଇଥିଲା । ପୁଅଟିଏ ପାଇବେ ବୋଲି ହେନ୍ରୀ ନୂଆ ଭାର୍ଯ୍ୟା ଗ୍ରହଣ କରିବାକୁ ମନ କଲେ । ନୂତନ ପତ୍ନୀଟିଏ ଗ୍ରହଣ କରିବାକୁ ହେଲେ କ୍ୟାଥେ-



କାଥେରାଇନ

ଖାଇନଙ୍କୁ ଛାଡ଼ପତ୍ର ଦେବା ପ୍ରୟୋଜନ । ଏଥିପାଇଁ ପୋପଙ୍କ ଅନୁମତି ଦରକାର । ସେ ପୋପଙ୍କୁ କହିଲେ, 'ତୁମ୍ଭେ ତୁମ୍ଭର ପୂର୍ବରେ ପ୍ରଚଳିତ ଆଦେଶକୁ ପ୍ରତ୍ୟାହାର କର ଏବଂ କେଥେରାଇନଙ୍କୁ ଛାଡ଼ପତ୍ର ଦେବା ନିମନ୍ତେ ମୋତେ ଅନୁମତି ଦିଅ ।' ପୋପ୍ ସ୍ପେନ ରଜାଙ୍କ ଡରରେ ଏପରି ଅନୁମତି ଦେଲେ ନାହିଁ । ତେଣୁ ହେନ୍ରି ପୋପଙ୍କ ଉପରେ ଭାରି ଚିଡ଼ିଗଲେ ।

ହେନ୍ରି ବର୍ତ୍ତମାନ ପାର୍ଲିଆମେଣ୍ଟଦ୍ୱାରା ଗୋଟିଏ ନୂଆ ଆଇନ ଜାରି କରାଇଲେ । ଏହି ଆଇନ ଅନୁସାରେ ପାର୍ଲିଆମେଣ୍ଟ ଘୋଷଣା କଲା ଯେ ଇଂଲଣ୍ଡର ଚର୍ଚ୍ଚ ଉପରେ ପୋପଙ୍କର କୌଣସି କ୍ଷମତା ନାହିଁ । ଇଂରାଜ ରାଜା ଇଂଲଣ୍ଡର ଚର୍ଚ୍ଚର ମାଲିକ । ଏହି ଆଇନକୁ "ଏକ୍ଟ ଅବ୍ ସୁପ୍ରାମେସି" କହନ୍ତି । କେଣ୍ଟାରବେରିର ପ୍ରଧାନ ଧର୍ମଯାଜକ ହେନ୍ରିଙ୍କ କଥାମତେ ସେହି ବିବାହ ଅନ୍ୟାଯ୍ୟ ବୋଲି ଘୋଷଣା କଲେ । ହେନ୍ରି କେଥେରାଇନଙ୍କୁ ଛାଡପତ୍ର ଦେଲେ ଏବଂ ଏକ ଦ୍ୱିତୀୟ ଭାର୍ଯ୍ୟା ଗ୍ରହଣ କଲେ ।

ପ୍ରକୃତ କଥା କହିବାକୁ ଗଲେ, ଇଂରାଜ ଜାତି ଇଂଲଣ୍ଡରେ ପୋପଙ୍କର ଯେଉଁ କ୍ଷମତା ଥିଲା, ସେହି କ୍ଷମତାକୁ ବହୁଦିନରୁ ଘୃଣା କରୁଥିଲେ । ସେ ବିଷୟରେ ହେନ୍ରି ଯେତେବେଳେ ପାର୍ଲିଆମେଣ୍ଟକୁ ଅନୁରୋଧ କଲେ, ସେମାନେ ତାହା ଆଗ୍ରହରେ ଗ୍ରହଣ କଲେ । ଏହା ବୋଲି ହେନ୍ରିଙ୍କ ଇଚ୍ଛା ନ ଥିଲା ଯେ ଇଂଲଣ୍ଡ ଧର୍ମ ସମ୍ବନ୍ଧରେ ଲୁଥରଙ୍କ ମତ ଅବଲମ୍ବନ କରିବ । ସେ କେବଳ ପୋପଙ୍କ ବିରୋଧୀ ଥିଲେ ।. ଏବଂ ଧର୍ମମତ ସମ୍ବନ୍ଧରେ ଲୁଥରଙ୍କର ମଧ୍ୟ ବିରୋଧୀ ଥିଲେ । ସୁତରାଂ ନିଜ ରାଜ୍ୟର ଯେଉଁମାନେ ପୋପଙ୍କୁ ମାନିଲେ, ହେନ୍ରି ସେମାନଙ୍କୁ ଯେପରି ଦଣ୍ଡ ଦେଲେ, ଯେଉଁମାନେ ଲୁଥରଙ୍କ ଧର୍ମମତ ମାନିଲେ ସେମାନଙ୍କୁ ମଧ୍ୟ ସେହିପରି ଦଣ୍ଡ ଦେଲେ ।

ହେନ୍‌ରୀଙ୍କ ରାଜତ୍ୱରେ କ୍ୟାଥଲିକ୍ ବା ପ୍ରୋଟେଷ୍ଟାଣ୍ଟ କେହି ନିରାପଦ ନ ଥିଲେ । ସେ ଯାହାକୁ ଚାହିଁଲେ ତାହାକୁ ପ୍ରାଣଦଣ୍ଡ ଦେବାକୁ ଲାଗିଲେ । ସେ ବାଘ ପରି ରକ୍ତପିପାସୁ ହୋଇ ପଡ଼ିଲେ ।

ହେନ୍‌ରୀଙ୍କର ଅର୍ଥର ଅଭାବ ହେଲା । ସେ ଦେଖିଲେ, ଇଂଲଣ୍ଡର ମଠମାନଙ୍କରେ ବହୁତ ସମ୍ପତ୍ତି ଅଛି । ସେ ୧୫୩୬ ରୁ ୧୫୩୯ ମଧ୍ୟରେ ସବୁ ମଠ ବନ୍ଦ କରି ଦେଲେ ଏବଂ ସନ୍ନ୍ୟାସୀମାନଙ୍କୁ ମଠରୁ ତଡ଼ିଦେଲେ । ସେମାନଙ୍କ ମଧ୍ୟରୁ କେତେ ଭିକ ମାଗି



ଇଂଲଣ୍ଡର ଗୋଟିଏ ମଠର ଶବ—ବାରମଣ୍ଡସି

ବୁଲିଲେ, କେତେ ଭୋକରେ ମଲେ । ମଠର ସମ୍ପତ୍ତିମାନ ବିକ୍ରି କରି ହେନ୍‌ରୀ ନିଜ ଅଭାବ ପୂରଣ କଲେ । ମଠର ମହନ୍ତମାନେ ଅନେକ ଢଙ୍ଗରେ ଗରିବମାନଙ୍କୁ ପୋଷୁଥିଲେ । ମହନ୍ତମାନେ ଚାଲିଯିବାରୁ ଦେଶରେ ବେକାର ସଂଖ୍ୟା ବଢ଼ିଲା ।

ହେନ୍‌ରୀ ଗୋଟିକ ପରେ ଗୋଟିଏ କରି ଛଅ ଗୋଟି ବିବାହ କରିଥିଲେ : (୧) କ୍ୟାଥେରାଇନ—ଏହାଙ୍କ ଝିଅ ମେରି,

(୨) ଏନ୍ ବଲିନ—ଏହାଙ୍କ ଝିଅ ଏଲିଜାବେଥ୍, (୩) ଜେନ ସିମୁର—ଏହାଙ୍କ ପୁଅ ଏଡୱାର୍ଡ୍, (୪) ଏନ୍ କ୍ଲିଭ୍ସ, (୫) କ୍ୟାଥେରାଇନ ହବାର୍ଡ୍, (୬) କ୍ୟାଥେରାଇନ ପାର । ଏମାନଙ୍କ ମଧ୍ୟରୁ ଦୁଇ ଜଣଙ୍କର ଛାଡ଼ପତ୍ର ହୋଇଥିଲା, ଦୁଇ ଜଣ ଫାଶିଦଣ୍ଡ ପାଇଥିଲେ, ଜଣେ ମରି ଯାଇଥିଲେ ଏବଂ କେବଳ ଜଣେ ହେନ୍ରିଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଭାର୍ଯ୍ୟାରୂପେ ରହିଥିଲେ ।

୧୫୩୬ ରେ ହେନ୍ରି ଇଂଲଣ୍ଡ ଓ ୱେଲ୍ସକୁ ମିଶାଇ ଗୋଟିଏ ପାର୍ଲିଅମେଣ୍ଟର ଅଧୀନ କରିଥିଲେ । ୧୫୪୧ ରେ ସେ 'ଆୟର୍ଲଣ୍ଡର ରାଜା' ଉପାଧି ଗ୍ରହଣ କରିଥିଲେ । ୧୫୪୨ ରେ ସେ ସ୍କଟଲଣ୍ଡର ସେନାଙ୍କୁ ଯୁଦ୍ଧରେ ହରାଇ ଦେଇଥିଲେ । ଏଥିରେ ସ୍କଟଲଣ୍ଡର ରାଜା ପଞ୍ଚମ ଜେମ୍ସ୍ ହତାଶ୍ରହୃଦୟ ହୋଇ ପ୍ରାଣତ୍ୟାଗ କଲେ ।

ହେନ୍ରି, ୧୫୪୭ ରେ ମଲେ ।

---

## ( ୨୦ )
## ଏଲିଜାବେଥ୍

ଅଷ୍ଟମ ହେନ୍ରିଙ୍କ ପରେ ତାଙ୍କ ନାବାଳକ ପୁତ୍ର ଷଷ୍ଠ ଏଡୱାର୍ଡ୍ ରାଜା ହେଲେ । ସ୍କଟଲଣ୍ଡ ଓ ଇଂଲଣ୍ଡ ମଧ୍ୟରେ ବହୁକାଳରୁ ଚଳି ଆସୁଥିବା କଳି ବନ୍ଦ କରିବା ନିମନ୍ତେ ଇଂରେଜମାନେ ଏଡୱାର୍ଡ୍ଙ୍କ ସଙ୍ଗେ ସ୍କଟଲଣ୍ଡର ନାବାଳକ ରାଣୀ ମେରିଙ୍କୁ ବିବାହ କରାଇବା ପ୍ରସ୍ତାବ କଲେ । ସ୍କଟମାନଙ୍କୁ ସେଥିରେ ବାଧ୍ୟ କରି ରାଜି କରାଇବା ନିମନ୍ତେ ଇଂରେଜମାନେ ସ୍କଟଲଣ୍ଡ ଆକ୍ରମଣ କଲେ । ଫଳରେ ସ୍କଟମାନେ ଅଧିକ ରାଗିଗଲେ ଏବଂ ଏହି ବିବାହ ହୋଇ ପାରିଲା ନାହିଁ ।

ଏଡୱାର୍ଡ଼ଙ୍କ ପରେ ତାଙ୍କ ଭଉଣୀ ମେରୀ ସିଂହାସନରେ ବସିଲେ । ତାଙ୍କ ମାତା କ୍ୟାଥେରିନଙ୍କର ଛାଡ଼ପତ୍ର କରିବା ନିମନ୍ତେ ହେନ୍ରି ପୋପଙ୍କ ବିରୋଧୀ ହୋଇଥିଲେ । ସେ କଥା ମେରିଙ୍କୁ ଭଲରୂପେ ଜଣା ଥିଲା ଏବଂ ସେ ମାତାଙ୍କ ସଙ୍ଗେ ବିଶେଷ କଷ୍ଟ ଭୋଗ କରିଥିଲେ । ସେ ରାଣୀ ହେବା ମାତ୍ରେ ପ୍ରୋଟେଷ୍ଟାଣ୍ଟ ଧର୍ମର ବିରୁଦ୍ଧାଚରଣ କରିଥିଲେ । ପ୍ରୋଟେଷ୍ଟାଣ୍ଟ ଯାଜକମାନଙ୍କୁ ଗିର୍ଜାରୁ ତଡ଼ିଦେଲେ । ଯ୍ୟାକ୍ଟ ଅବ ସୁପ୍ରାମେସିକୁ ଓଲଟାଇ ଦେଇ ଇଂଲଣ୍ଡର ଗିର୍ଜାରେ ପୋପଙ୍କ କ୍ଷମତା ପୁଣି ଜାରି କଲେ । ଯେଉଁ ଯାଜକମାନେ ଏହି ନୂଆ ବନ୍ଦୋବସ୍ତର ପ୍ରତିବାଦ କଲେ, ମେରି ସେମାନଙ୍କୁ ନିଆଁରେ ପୋଡ଼ି ମାରିଦେଲେ । ନିଜ ଧର୍ମ ବିଶ୍ୱାସ ,ସକାଶେ ୨୭୦ ଜଣ ପ୍ରୋଟେଷ୍ଟାଣ୍ଟ ମେରିଙ୍କ ରାଜତ୍ୱକାଳରେ ନିଆଁରେ ପୋଡ଼ି ମରିଥିଲେ ।

ମେରିଙ୍କ ପରେ ହେନ୍ରିଙ୍କ ଅନ୍ୟ ଝିଅ ଏଲିଜାବେଥ ୧୫୫୮ ରେ ଇଂଲଣ୍ଡର ରାଣୀ ହେଲେ । ସେତେବେଳେ ତାଙ୍କୁ ୨୧ ବର୍ଷ ବୟସ ହୋଇଥିଲା । ତାଙ୍କ ଭଉଣୀ ମେରି ତାଙ୍କୁ ରାଜଦ୍ରୋହୀ ବୋଲି ଜେଲଖାନାରେ ଭର୍ତ୍ତି କରିଥିଲେ । ସେ ଶୁଣିଲେ; ମେରି ମରି ଯାଇଥିବାରୁ ଲୋକେ ତାଙ୍କୁ ଇଂଲଣ୍ଡର ରାଣୀ କରିଛନ୍ତି । ତାଙ୍କ ମନ କୃତଜ୍ଞ ମୋଟ ହୋଇଗଲା । ସେ ଗୋଟିଏ ଗଛତଳେ ଭଗବାନଙ୍କୁ ପ୍ରାର୍ଥନା କରି ବସିଲେ, "ପ୍ରଭୋ, ମୋତେ ଏଡ଼େବଡ଼ ରାଜ୍ୟ ଦେଇଛ । ମୁଁ ସାମାନ୍ୟ ଗୋଟିଏ ବାଳିକା । ଏଡ଼େ ବଡ଼ ରାଜ୍ୟ ମୁଁ କିପରି ଚଳାଇବି ? ତୁମ୍ଭେ ମୋତେ ସାହାଯ୍ୟ କର । ତୁମ୍ଭେ ମୋର ରାଜ୍ୟ ଚଳାଇବ ।"



ଏଲିଜାବେଥ୍

[ ଏଲିଜାବେଥ ଇଂଲଣ୍ଡର ରାଣୀ । ତାଙ୍କୁ ବିବାହ କରିବା ନିମନ୍ତେ କେତେ କେତେ ରାଜା, ବଡ଼ଲୋକ ଚେଷ୍ଟା କଲେ । ସେମାନଙ୍କ ମଧ୍ୟରେ ସ୍ପେନର ରାଜା ଫିଲିପ୍ ଓ ଫ୍ରାନ୍ସରେ ଥିବା ଆଞ୍ଜୁ ପ୍ରଦେଶର

ଉଭୟ ପ୍ରଧାନ ଥିଲେ । ଏଲିଜାବେଥ୍ ଦେଖିଲେ, ସେତେବେଳେ ଇଂଲଣ୍ଡର ପ୍ରଜାମାନେ ଦୁଇଦଳ ହୋଇଥିଲେ, ଦଳେ ପ୍ରୋଟେଷ୍ଟାଣ୍ଟ ଏବଂ ଅନ୍ୟ ଦଳେ କ୍ୟାଥଲିକ । ଏଲିଜାବେଥ୍ ଜଣେ ପ୍ରୋଟେଷ୍ଟାଣ୍ଟଙ୍କୁ ବିବାହ କଲେ କ୍ୟାଥଲିକ ପ୍ରଜାମାନେ ଅସନ୍ତୁଷ୍ଟ ହେବେ; ଏବଂ ଜଣେ କ୍ୟାଥଲିକଙ୍କୁ ବିବାହ କଲେ ପ୍ରୋଟେଷ୍ଟାଣ୍ଟ ପ୍ରଜାମାନେ ଅସନ୍ତୁଷ୍ଟ ହେବେ । ଏଣୁ ସେ ଉଭୟ ଦଳର ପ୍ରଜାମାନଙ୍କୁ ସନ୍ତୁଷ୍ଟ ରଖିବା ସକାଶେ ମନରେ ସ୍ଥିର କଲେ ଯେ ଜୀବନଯାକ ଅବିବାହିତ ରହିବେ । ଯେଉଁ ସ୍ତ୍ରୀମାନେ ଜୀବନଯାକ ଅବିବାହିତ ରହନ୍ତି, ସେମାନଙ୍କୁ କୁମାରୀ କହନ୍ତି । ତୁମ୍ଭେମାନେ କୁମାରୀ ଫ୍ଲୋରେନ୍ସ ନାଇଟିଙ୍ଗେଲ୍‌ଙ୍କ କଥା ଶୁଣିଥିବ । ଏଲିଜାବେଥଙ୍କୁ କୁମାରୀ ରାଣୀ (Virgin Queen) କହନ୍ତି ।

ଏଲିଜାବେଟଙ୍କ ରାଜତ୍ୱରେ ୟୁରୋପରେ ଭୟଙ୍କର ଧର୍ମଯୁଦ୍ଧ ଚାଲିଥିଲା । ୟୁରୋପରେ ଲୋକେ କ୍ୟାଥଲିକ ବା ପ୍ରୋଟେଷ୍ଟାଣ୍ଟ ରହି ନିଜ ଦଳର ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ଚେଷ୍ଟୁଥିଲେ । ପ୍ରୋଟେଷ୍ଟାଣ୍ଟମାନେ ପୋପଙ୍କର ଶତ୍ରୁତା କରୁଥିଲେ । ଇଂଲଣ୍ଡରେ ମଧ୍ୟ ସେହିପରି ଦୁଇ ଦଳ ହୋଇଥିଲେ । ହେନ୍‌ରିଙ୍କ ରାଜତ୍ୱରୁ ଏହି ଦଳର ସୃଷ୍ଟି ହୋଇଥିଲା । ହେନ୍‌ରି କ୍ୟାଥଲିକମାନଙ୍କୁ ଭୀଷଣ ଦଣ୍ଡ ଦେଇଥିଲେ । ମେରି ପ୍ରୋଟେଷ୍ଟାଣ୍ଟମାନଙ୍କୁ ଭୀଷଣ ଦଣ୍ଡ ଦେଇଥିଲେ, କିନ୍ତୁ ସେମାନେ ସେଥିରେ କୃତକାର୍ଯ୍ୟ ହୋଇ ନ ଥିଲେ । ଭୀଷଣ ଦଣ୍ଡ ଦେଇ ମୁଦ୍ଧା ହେନ୍‌ରି କ୍ୟାଥଲିକମାନଙ୍କର କିମ୍ବା ମେରି ପ୍ରୋଟେଷ୍ଟାଣ୍ଟମାନଙ୍କର ସଂଖ୍ୟା ଶେଷ କରି ପାରି ନ ଥିଲେ । ଅଥଚ ସେମାନଙ୍କର ସେହି ଚେଷ୍ଟା ହେତୁରୁ ଦେଶରେ ବିଶେଷ ଅଶାନ୍ତି ଜନ୍ମିଥିଲା । ଏଲିଜାବେଥ ଦେଖିଲେ, ସେ ଯଦି ପିତାଙ୍କ ବା ଭଉଣୀଙ୍କ ପରି କାହାରିକି ଧର୍ମବିଶ୍ୱାସ ସକାଶେ ବାଧା କରନ୍ତି, ସେ

ମଧ୍ୟ କୃତକାର୍ଯ୍ୟ ହେବେ ନାହିଁ, ଅଥଚ ଦେଶରେ ଅଶାନ୍ତି ବଢ଼ିବ; ତେଣୁ ସେ ସ୍ଥିର କଲେ, ଧର୍ମ ବିଷୟରେ ସେ କାହାକୁ ବାଧ୍ୟ କରିବେ ନାହିଁ । ଯାହାର ଯେପରି ଇଚ୍ଛା ସେ ସେପରି ବିଶ୍ୱାସ କରୁ, କିନ୍ତୁ ସମସ୍ତେ ଗିର୍ଜାକୁ ନିୟମିତ ଆସି ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତୁ । କେବଳ ପୋପ ଇଂଲଣ୍ଡରେ କୌଣସି କ୍ଷମତା ବ୍ୟବହାର କରି ପାରିବେ ନାହିଁ । ସେଥି ସକାଶେ ସେ ଆକ୍ଟ ଅବ୍ ସୁପ୍ରିମେସି ଆଉ ଥରେ ପାର୍ଲିଆମେଣ୍ଟକୁ ଜାରି କରିବା ନିମନ୍ତେ କହିଲେ । ୧୫୫୯ ରେ ସେହି ଆଇନ ଆଉ ଥରେ ପାସ ହେଲା । ପୋପ ଇଂଲଣ୍ଡର ଚର୍ଚ୍ଚ ଉପରେ ନିଜ କ୍ଷମତା ସବୁଦିନ ନିମନ୍ତେ ହରାଇଲେ । ଲୋକେ କ୍ୟାଥଲିକ ହେଉନ୍ତୁ କିମ୍ବା ପ୍ରୋଟେଷ୍ଟାଣ୍ଟ ହେଉନ୍ତୁ, ଚର୍ଚ୍ଚକୁ ନିୟମିତ ଆସିବେ; ସମସ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରିବେ । ଯଦି ନ ଆସିବେ ସପ୍ତାହରେ ଏକ ଶିଲିଂ ଜୋରିମାନା ଦେବେ । ଏଥିରୁ ବୁଝିପାରୁଥିବ, ଏଲିଜାବେଥ ଧର୍ମ ବିଷୟରେ ମଧ୍ୟମ ପନ୍ଥା ଅବଲମ୍ବନ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ପ୍ରଜାଙ୍କର ଧର୍ମବିଶ୍ୱାସ ନେଇ ରାଜାଙ୍କର ବା ରାଜ୍ୟର କୌଣସି ହାନିଲାଭ ନାହିଁ । ରାଜ୍ୟ ଆଉ ଧର୍ମ ଦୁଇଟା ବିଭିନ୍ନ କଥା । ଧର୍ମ ନେଇ କାହାକୁ ବାଧ୍ୟବାଧକତା କଲେ ରାଜ୍ୟରେ ଏକତା ଆସିବ ନାହିଁ । ଯାହା କଲେ ମଧ୍ୟ ନିଜ ନିଜ ଧର୍ମବିଶ୍ୱାସ ଲୋକେ ଛାଡ଼ିବେ ନାହିଁ । ସେପରି କରିବାକୁ ଗଲେ, ରାଜ୍ୟରେ କେବଳ ଅଶାନ୍ତି ଓ କଳି ବଢ଼ିବ । ସେ ଠିକ୍ ବୁଝିଥିଲେ । ଏହାର ଫଳରେ ଲୋକେ ଧର୍ମ ନେଇ କଳି କରିବାକୁ କ୍ରମେ ଭୁଲିବାକୁ ଆରମ୍ଭ କଲେ ।

ତୁମ୍ଭେମାନେ ଆଗରୁ ପଢ଼ିଛ, ଇଂଲଣ୍ଡର ରାଜା ଏଡ଼ୱାର୍ଡ଼ଙ୍କ ସଙ୍ଗେ ସ୍କଟଲଣ୍ଡର ରାଣୀ ମେରିଙ୍କୁ ବିବାହ କରାଇବା ନିମନ୍ତେ ଇଂରେଜମାନେ ସ୍କଟଲଣ୍ଡ ଆକ୍ରମଣ କରିଥିଲେ । ପିଙ୍କି ଯୁଦ୍ଧରେ

ଇଂରେଜମାନେ ଜାଣିଲେ; କିନ୍ତୁ ସେମାନଙ୍କ ଉଦ୍ଦେଶ୍ୟ ନିଷ୍ଫଳ ହୋଇଥିଲା । ସ୍କଟମାନେ ମେରିଙ୍କୁ ରାଗରେ ଫ୍ରାନ୍‌ସକୁ ପଠାଇ ଦେଲେ । ମେରି ଫ୍ରାନ୍‌ସର ରଜା ଫ୍ରାନ୍‌ସିସଙ୍କୁ ବିବାହ କଲେ ଏବଂ ଜଣେ ପୁରାପୁରି କ୍ୟାଥଲିକ ହେଲେ । ଫ୍ରାନ୍‌ସିସ୍ ମରିଗଲେ । ମେରି ସ୍କଟଲଣ୍ଡକୁ ଫେରି ଆସିଲେ ।

ଯେତେବେଳେ ମେରି ଫ୍ରାନ୍‌ସରେ ରହୁଥିଲେ, ସ୍କଟଲଣ୍ଡରେ ଜନ ନକ୍‌ସ ବୋଲି ଜଣେ ଲୋକ ଥିଲେ । ସେ ସ୍କଟଲଣ୍ଡର ଧର୍ମକୁ ନୂତନ ଆକାରରେ ଗଢ଼ିଥିଲେ । ଦେଶର ସମସ୍ତ ଲୋକ ପ୍ରୋଟେଷ୍ଟାଣ୍ଟ ହୋଇଥିଲେ । ନକ୍‌ସ ଚର୍ଚ୍ଚରୁ ବିଶପମାନଙ୍କୁ ତଡ଼ିଦେଲେ । ଚର୍ଚ୍ଚମାନ ଚଳାଇବା ସକାଶେ ଗୋଟିଏ ସଭା ରହିଲା । ଦେଶର ବଡ଼ ବଡ଼ ବୁଢ଼ା କେତେ ଜଣ ଏହି ସଭାର ସଭ୍ୟ ହେଲେ । ଏହି ସଭାକୁ "ବୃଦ୍ଧମାନଙ୍କର ଧର୍ମସଭା" (Council of presbyters) କହନ୍ତି । ଧର୍ମ ସମ୍ବନ୍ଧରେ ଯେ କୌଣସି କଥା ପଡ଼ିଲେ ଏହି ଧର୍ମସଭା ବସି ବିଚାର କରୁଥିଲା ଏବଂ ତହିଁର ନିଷ୍ପତ୍ତି କରୁଥିଲା । ତାହା ଛଡ଼ା ସ୍କୁଲମାନ ବସାଉଥିଲା ଏବଂ ତହିଁରେ କଣ ପଢ଼ାଯିବ; ତାହା ମଧ୍ୟ ନିଷ୍ଟୟ କରୁଥିଲା ।

ମେରି ଫ୍ରାନ୍‌ସରୁ ସ୍କଟଲଣ୍ଡକୁ ଫେରି ଦେଖନ୍ତି ତ, ସେ ନିଜେ କ୍ୟାଥଲିକ ଅଥଚ ନିଜ ରାଜ୍ୟର ପ୍ରଜାମାନେ ଚରମପନ୍ଥୀ ପ୍ରୋଟେଷ୍ଟାଣ୍ଟ ହୋଇଛନ୍ତି । ସେ ପ୍ରଜାମାନଙ୍କୁ ଶାସନ କରନ୍ତି କିପରି ? ତାଙ୍କ ମତ ପ୍ରଜାମାନଙ୍କ ମତ ସଙ୍ଗେ ଏକାବେଳକେ ଓଲଟା । ତାଙ୍କୁ ବଡ଼ କଷ୍ଟ ହେଲା । ସେ ସ୍କଟଲଣ୍ଡ ଶାସନ କରି ନ ପାରି ଇଂଲଣ୍ଡକୁ ପଳାଇଗଲେ ।

ଏଲିଜାବେଥ୍ ମେରିଙ୍କୁ ଆଶ୍ରୟ ଦେଲେ । ଇଂଲଣ୍ଡର କ୍ୟାଥଲିକମାନେ ଏଲିଜାବେଥଙ୍କ ସ୍ଥାନରେ ମେରିଙ୍କୁ ରାଣୀ କରିବେ

ବୋଲି ବାରୁଥିଲେ । ଉପରେ ଏଲିଜାବେଥ୍ ମେରୀଙ୍କୁ ଜେଲଖାନାରେ ରଖିଥିଲେ। କିନ୍ତୁ ମେରି ଜେଲଖାନାରୁ ଷଡ଼ଯନ୍ତ୍ର କଲେ ଏବଂ ଏଲିଜାବେଥଙ୍କୁ ହତ୍ୟା କରି ନିଜେ ରାଣୀ ହେବାକୁ ଚେଷ୍ଟା କଲେ । ତେଣୁ ୧୫୮୭ ରେ ମେରି ପ୍ରାଣଦଣ୍ଡ ପାଇଲେ ।

ସ୍ପେନ ବର୍ତ୍ତମାନ ଇଂଲଣ୍ଡର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲା । ସ୍ପେନବାସୀ ଆମେରିକାରେ ଏକ ବଡ଼ ଭୂଖଣ୍ଡ ଅଧିକାର କରିଥିଲେ । ସେଠାରେ ଅନେକ ଗୁଡ଼ିଏ ସୁନାରୁପାର ଖଣି ଥିଲା । ସ୍ପେନବାସୀ ଆମେରିକାରୁ କୁଢ଼ କୁଢ଼ ସୁନାରୁପା ସ୍ପେନକୁ ଆଣୁଥିଲେ । ଇଂରେଜମାନେ ଏହା ସହି ପାରିଲେ ନାହିଁ । ସେମାନେ କହିଲେ, ଆମେରିକା ସଙ୍ଗେ ସେମାନେ ମଧ୍ୟ ଏପରି ବାଣିଜ୍ୟ କରି ଧନୀ ହେବେ ।

ସାର୍ ଫ୍ରାନସିସ୍ ଡ୍ରେକ ନାମରେ ଜଣେ ସାହସୀ ଇଂରେଜ ନାବିକ ଥିଲେ । ସେ ରାଣୀ ଏଲିଜାବେଥଙ୍କ ନିକଟରୁ ଗୋପନରେ ଅନୁମତି ନେଇ ସ୍ପେନର ସୁନାରୁପା ଜାହାଜ ସମୁଦ୍ରରେ ଲୁଣ୍ଠନ କଲେ । ଆମେରିକାରେ ଥିବା ସ୍ପେନର ନଗର ଗ୍ରାମ ମଧ୍ୟ ଲୁଣ୍ଠନ କଲେ । ସେ ମେଗେଲେନ ପ୍ରଣାଳୀ ବାଟେ ଯାଇ ଚିଲି ଉପକୂଳରେ ପହଞ୍ଚିଲେ ଏବଂ ସ୍ପେନର ଅଧିକାରରେ ଥିବା ନଗରମାନ ଲୁଣ୍ଠନ କରି ପ୍ରଶାନ୍ତ ମହାସାଗର ଦେଇ ଇଂଲଣ୍ଡକୁ ଫେରି ଆସିଲେ । ତାଙ୍କ ପୂର୍ବେ କେହି ନାବିକ ଏପରି ପୃଥିବୀକୁ ବେଷ୍ଟନ କରି ନ ଥିଲେ ।

ଡ୍ରେକ କେବଳ ଗୋଟିଏ ସ୍ପେନୀୟ ଜାହାଜ ଲୁଣ୍ଠନ କରି ୨୦ ହଜାର ପାଉଣ୍ଡ ମୂଲ୍ୟର ଧନରତ୍ନ ପାଇଥିଲେ । ସ୍ପେନ ରାଜା ଡ୍ରେକଙ୍କ ବିରୋଧରେ ଯେତେ ଆପତ୍ତି କଲେ, ଇଂରେଜମାନେ କିଛି ଶୁଣିଲେ ନାହିଁ । ରାଗରେ ସ୍ପେନ ରାଜା ଇଂଲଣ୍ଡ ଆକ୍ରମଣ କରିବା




ଫ୍ରାନସିସ୍ ଡ୍ରେକ

ଲାଗି ପ୍ରସ୍ତୁତ ହେଲେ ଏବଂ ଗୋଟିଏ ବଡ ଜାହାଜ ନିର୍ମାଣ କରାଇଲେ । ଏହି ବଡ ଯୁଦ୍ଧ ଜାହାଜକୁ ସ୍ପେନର ଆର୍ମାଡ଼ା କହନ୍ତି ।

ଡ୍ରେକ ସ୍ପେନ ଉପକୂଳରେ ଥିବା କାଡ଼ିଜ ବନ୍ଦରକୁ ଯାଇ ସେଠି ଜାହାଜରୁ ଅଧେ ପୋଡ଼ି ନଷ୍ଟ କରିଦେଲେ ।

ସ୍ପେନବାସୀ ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ । ଇଂଲଣ୍ଡ ଆକ୍ରମଣରେ ଦୃଢ଼ସଙ୍କଳ୍ପ ହେଲେ । ୧୩୦ ନୌକା, ୮୦୦୦ ନାବିକ, ୨୦୦୦ ତୋପ ଓ ୨୦,୦୦୦ ସୈନିକ ଘେନି ଆର୍ମାଡ଼ା ଇଂଲଣ୍ଡ ଆକ୍ରମଣ ସକାଶେ ଚଳିଲା ।

ଇଂଲଣ୍ଡବାସୀ ଭୟରେ ଥରହର ହେଲେ । ଯେଉଁଠି ଯେତେ ଜାହାଜ ଥିଲା, ସବୁ ଆଣି ଜମା କଲେ । ବଣିକମାନେ ପ୍ରାଣ-ପଣରେ ଦେଶକୁ ରକ୍ଷା କରିବେ ବୋଲି ନିଜ ନିଜର ଜାହାଜମାନ ଡ୍ରେକଙ୍କ ହାତରେ ଅର୍ପଣ କଲେ ।

ଆର୍ମାଡ଼ାକୁ ଇଂଲିଶ ପ୍ରଣାଳୀରେ ପଶିବାକୁ ଦେଇ, ଇଂରେଜମାନେ ତା ପଛରେ ଗୋଡ଼ାଇଲେ । ଆର୍ମାଡ଼ା ଆଗକୁ ଆଗକୁ



ଇଂଲଣ୍ଡର ଆର୍କ ରୟେଲ

ଗଲା । ସୁବିଧା ଦେଖି ଇଂରେଜମାନେ ଆର୍ମାଡ଼ାକୁ ଗୋଟିଏ ଗୋଟିଏ ନଷ୍ଟ କରିବାକୁ ଲାଗିଲେ । ସ୍ପେନବାସୀ ପାରିଲେ ନାହିଁ । ଗ୍ରେଟ୍ ବ୍ରିଟେନ ବେଷ୍ଟନ କରି ସ୍କଟଲଣ୍ଡର ଉତ୍ତର ପଟ ବାଟେ ପଳାଇଲେ । ବାଟରେ ଝଡ଼ ହେଲା । ଆର୍ମାଡ଼ାରେ ନିଆଁ ଲାଗିଲା । ସେଥିରୁ ପ୍ରାୟ ଅଧେ ପୋଡ଼ିଗଲା । ଏହିପରି ଆର୍ମାଡ଼ା ହସ୍ତରୁ ଇଂରେଜମାନେ ରକ୍ଷା ପାଇଲେ ।

ଏଲିଜାବେଥ୍ ୪୫ ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱରେ ଇଂଲଣ୍ଡ ଅନେକ ଦିଗରେ ଉନ୍ନତ କରିଥିଲା । ଇଂଲଣ୍ଡର ଗୌରବ ବୃଦ୍ଧି କରି ଏଲିଜାବେଥ୍ ୧୬୦୩ ରେ ମଲେ ।

---

## (୬୧)

## ମଧ୍ୟଯୁଗର ଶେଷକାଳରେ ଦେଶର ଅବସ୍ଥା

ପ୍ରତି ସହରର ଚାରି ପାଖରେ ପ୍ରାଚୀର ରହିଥିଲା । ରାତିରେ ତହିଁର ପ୍ରବେଶଦ୍ୱାର ବନ୍ଦ ରହୁଥିଲା । ସହର ମଧ୍ୟକୁ ଗଲେ ସେଥି ସକାଶେ ଶୁଳ୍କ ଦେବାକୁ ପଡ଼ୁଥିଲା । ସହର ଭିତରେ ଥିବା ପଥଗୁଡ଼ିକ ଅପ୍ରଶସ୍ତ ଓ ଅଲଣ୍ଠମନ୍ଦ ରହୁଥିଲା । ଲୋକେ ପରିଷ୍କାର-ପରିଚ୍ଛନ୍ନ ରହିବାକୁ ଶିଖି ନ ଥିଲେ । ଘର ଭିତରେ କିଛି ମଇଳା ହେଲେ, ସେସବୁ ଆଣି ରାସ୍ତା ଉପରେ ଫୋପାଡ଼ି ଦେଇ ଯାଉଥିଲେ ।

ଘରଗୁଡ଼ିକର ଉପର ମହଲାମାନ ରାସ୍ତା ଉପରକୁ ବ୍ୟାପି ଆସୁଥିଲା । ଏଗୁଡ଼ିକ ରାସ୍ତା ଉପରକୁ ଏପରି ବ୍ୟାପି ରହୁଥିଲା ଯେ ଉପର ମହଲାରେ ଥିବା କେହି ଲୋକ ରାସ୍ତାରେ ଯାଉଥିବା ଲୋକମାନଙ୍କ ସଙ୍ଗେ କରମର୍ଦ୍ଦନ କରି ପାରୁଥିଲା ।

ତନ୍ତୀ, କମାର, ଚମାର, ବଢ଼େଇ ଆଦି ବ୍ୟବସାୟୀମାନେ ନିଜ ଘରେ ଥାଇ ବ୍ୟବସାୟ କରୁଥିଲେ ଏବଂ ନିଜ ଘରେ ବସି ତିଆରି ଜିନିଷସବୁ ବିକୁଥିଲେ । ସେମାନେ ପ୍ରତ୍ୟେକେ ପନ୍ଦର କୋଡ଼ିଏ ଜଣ ଶିକ୍ଷାନବିସ୍ ଘରେ ରଖୁଥିଲେ, ସେମାନଙ୍କୁ ଖାଇବାକୁ ପିଇବାକୁ ଦେଉଥିଲେ ଏବଂ ଶିକ୍ଷା ମଧ୍ୟ ଦେଉଥିଲେ ।

ସପ୍ତାହରେ ଥରେ ହାଟ ବସେ । ବର୍ଷକରେ ଥରେ ଦୁଇ ଥର ପ୍ରଧାନ ହାଟ ବା ମେଳା ବସେ । ଏହି ମେଳାମାନ କ୍ରମାଗତ ଦୁଇ ତିନି ସପ୍ତାହ ପର୍ଯ୍ୟନ୍ତ ବସେ । ଦେଶବିଦେଶରୁ ଲୋକ ଆସି କିଣାବିକା କରନ୍ତି । ଫ୍ରାନ୍ସରୁ ଭଲ ମଦ, ଫ୍ଲେଣ୍ଡରରୁ ସୂକ୍ଷ୍ମ ବସ୍ତ୍ର, ଭେଣୋଯ୍ସରରୁ ଲୁଣ, ଇଟାଲିରୁ ରେଶମ ଲୁଗା, ଜର୍ମାନିରୁ ଲୋମ ଓ ଚମଡ଼ା, ଦୂର ପ୍ରାଚ୍ୟ ଦେଶରୁ ମସଲା ଆସେ । ଲୋକେ ତହିଁରେ ନୃତ୍ୟ, ବାଦ୍ୟ, ଗୀତ, ତାମସା ଦେଖାଇ ଦୁଇ ପଇସା ରୋଜଗାର ମଧ୍ୟ କରନ୍ତି । କେହି କେହି କଳିଗୋଳ ମଧ୍ୟ କରନ୍ତି । କଳିଗୋଳ ହେଲେ ଧୂଳିଆ ଗୋଡ଼ରେ ଯାଇ ନଗରର ମେୟର ବା ବର୍ଗୃହ-ପତିଙ୍କ ନିକଟରେ ଫେରାଦ ହୁଅନ୍ତି ।

ଇଂଲଣ୍ଡର ପଶମବାଣିଜ୍ୟ ଦ୍ରୁତବେଗରେ ଉନ୍ନତି କରୁଥିଲା । ଲୋକେ ପଶମ ବସ୍ତ୍ର ବୁଣିବା ମଧ୍ୟ ଶିଖିଲେ ଏବଂ ଫ୍ରାନ୍ସ ଓ ଇଟାଲି ସଙ୍ଗେ ପ୍ରତିଯୋଗିତା ଆରମ୍ଭ କଲେ । ଅନେକ ତନ୍ତୀ ଲୁଗା ବୁଣି ଧନଶାଳୀ ହେଲେ । ଜଣେ ତନ୍ତୀ ଲୁଗା ବୁଣି ଏତେ ଅର୍ଥ ଉପାର୍ଜ୍ଜନ କରିଥିଲା ଯେ ଦ୍ୱିତୀୟ ରିଚାର୍ଡ ତାକୁ ଆର୍ଲରେ ପରିଣତ କରିଥିଲେ ।

ଇଂରେଜ ବଣିକମାନେ ବାଣିଜ୍ୟବୋଇତରେ ଦେଶ-ଦେଶାନ୍ତରକୁ ଯାଉଥିଲେ । "ସାହସୀ ବଣିକ ସଂଘ" ନାମରେ ଏକ ବଣିକ୍-ସଂଘ ସ୍ଥାପିତ ହୋଇଥିଲା । ଏମାନେ ବାଲ୍ଟିକ ଓ

ଭୂମଧ୍ୟସାଗରରେ ବାଣିଜ୍ୟ କରୁଥିଲେ । ସେମାନଙ୍କର ବୋଇତ ବେଳେ ବେଳେ ସମୁଦ୍ରରେ ବୁଡ଼ି ଯାଉଥିଲା, ଦସ୍ୟୁମାନେ ବାଟରେ ଲୁଣ୍ଠନ କରୁଥିଲେ; ତଥାପି ସେମାନେ ଟିକିଏ ହେଲେ ହତୋତ୍ସାହ ହେଉ ନ ଥିଲେ ।

କୁଳୀନ (ନୋବଲ)ମାନେ କେତେକ ଅନୁଚର ରଖୁଥିଲେ । ସେହି ଅନୁଚରମାନେ କୁଳୀନଙ୍କର ସଙ୍କେତ (Livery) ଧାରଣ କରୁଥିଲେ । ବିଭିନ୍ନ କୁଳୀନଙ୍କର ବିଭିନ୍ନ ସଙ୍କେତ ଥିଲା । କୌଣସି ସଙ୍କେତଧାରୀ ବା ଚୈତ୍ରପଦାର ଉପରେ କେହି ମୋକଦମା ହେଲେ କୁଳୀନ ନିଜ ଦଳବଳ ଘେନି ଅଦାଲତରେ ଉପସ୍ଥିତ ହେଉଥିଲେ । ସେହି ଭୟରେ ବିଚାରପତିମାନେ ନ୍ୟାଯ୍ୟ ବିଚାର କରି ପାରୁ ନ ଥିଲେ । ଲୋକେ ମୁଣ୍ଡ ପୋତି ସେମାନଙ୍କ ଅତ୍ୟାଚାର ସହୁଥିଲେ ଏବଂ ମୋକଦ୍ଦମା କରିବାକୁ ସାହସ କରୁ ନ ଥିଲେ । ରାଜା ଦୁର୍ବଳ ହେଲେ ଏହା ଅଧିକ ଭୀଷଣ ହୋଇ ଉଠୁଥିଲା ।

ଗିର୍ଜାର ଯାଜକ, ବିଶପ ଓ ମଠର ମହନ୍ତମାନେ କମ ପ୍ରଭାବଶାଳୀ ନ ଥିଲେ । ସେମାନେ ମଧ୍ୟ ଅତ୍ୟଧିକ ଅର୍ଥର ମାଲିକ ଥିଲେ । ସେମାନେ ମଧ୍ୟ କୁଳୀନମାନଙ୍କ ପରି ଥିଲେ ଏବଂ ନାନା ଉପାୟରେ ଅର୍ଥଶୋଷଣ କରୁଥିଲେ । ପ୍ରଜାଶକ୍ତି କଣ ? ତାହା ଦେଶରେ ଜଣା ନ ଥିଲା । ଅନ୍ୟ ଦୁଇ ଶକ୍ତି ରାଜାଙ୍କୁ ମଧ୍ୟ ଅବମାନନା କରୁଥିଲେ ।

ଶତବର୍ଷ ଯୁଦ୍ଧ ଓ ଗୋଲାପଯୁଦ୍ଧରେ ଅନେକ କୁଳୀନ ପରିବାର ନଷ୍ଟ ହୋଇଥିଲେ । ସେମାନଙ୍କର ଭୂମିବାଡ଼ି ରାଜାଙ୍କ ହାତରେ ପଡ଼ିଥିଲା । ଅବଶିଷ୍ଟ ଯେ କେତୋଟି ପରିବାର ଥିଲେ, ସେମାନଙ୍କୁ ଦମନ କରିବାପାଇଁ ରାଜା ସର୍ବଦା ଚେଷ୍ଟିତ ଥିଲେ । ଲୋକେ ଏହି କାର୍ଯ୍ୟରେ ରାଜାଙ୍କୁ ସାହାଯ୍ୟ କରିବା ନିମନ୍ତେ ପ୍ରସ୍ତୁତ

ଥିଲେ, କାରଣ ପ୍ରଜାମାନେ ସେମାନଙ୍କର ଅନ୍ୟାୟ ଅତ୍ୟାଚାରରେ ସଢ଼ି ଯାଇଥିଲେ ଏବଂ ବଳିଷ୍ଠ ରାଜା ପାଇଲେ; ସେମାନେ ଶାନ୍ତିରେ ରହି ପାରିବେ ଏବଂ ସେମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇବେ ବୋଲି ବୁଝିଥିଲେ ।

ଏତେବେଳେ ଗୋଲି ବାରୁଦ, ତୋପବନ୍ଧୁକର ଆବିଷ୍କାର ହେଲା । ଏସବୁ ବେରନ ବା କୁଳୀନମାନେ ପାଇ ପାରିଲେ ନାହିଁ । ରାଜାଙ୍କ ପକ୍ଷରେ ଏହା ଗୋଟିଏ ଅମୃତ ଫଳ ପ୍ରସବ କରିଥିଲା । ରାଜାଙ୍କ ସ୍ଥାୟୀ ସେନା ଆଗରେ ବେରନମାନେ କିଛି କରି ପାରିଲେ ନାହିଁ । ରାଜା ସେମାନଙ୍କୁ ସହଜରେ ବଶୀଭୂତ କରି ରଖି ପାରିଲେ ।

ଏତେବେଳେ ସମଗ୍ର ଇଉରୋପର ଶିକ୍ଷା, ସଭ୍ୟତାରେ ଏକ ଭୀଷଣ ପରିବର୍ତ୍ତନ ଘଟିଥିଲା । ଲୋକେ ପୂର୍ବପରି ଧର୍ମ ବିଷୟରେ ଅନ୍ଧବିଶ୍ୱାସ ଆଉ ରଖୁ ନ ଥିଲେ । ପୋପ ବା ଯାଜକ ଯାହା କିଛି କହିଲେ, ତାହାକୁ ବିନା ଯୁକ୍ତିରେ ଆଉ କେହି ମାନିବା ପାଇଁ ପ୍ରସ୍ତୁତ ନ ଥିଲେ ।

ଗ୍ରୀକ୍‌ମାନେ ପ୍ରସିଦ୍ଧ କନଷ୍ଟାଣ୍ଟିନୋପଲରୁ ତୁରସ୍କମାନଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ । ଏହି ବିତାଡ଼ିତ ଗ୍ରୀକ୍‌ମାନେ ଜଗତ୍ ମଧ୍ୟରେ ଏକ ସୁନ୍ଦର ସାହିତ୍ୟର ଅଧିକାରୀ ଥିଲେ ସେମାନେ ଏହି ସାହିତ୍ୟ ନେଇ ଇଟାଲିରେ ପ୍ରଚାର କଲେ । ତାହା କ୍ରମେ ସମଗ୍ର ଇଉରୋପରେ ବ୍ୟାପିଗଲା ଏବଂ ଲୋକଙ୍କର ଚକ୍ଷୁ ଖୋଲି ଦେଲା । ପ୍ରାଚୀନ ଗ୍ରୀକ ସାହିତ୍ୟରୁ ଇଉରୋପବାସୀ "ନୂତନ ଜ୍ଞାନ" (New Learning) ଲାଭ କଲେ । ଦେଶରେ ଚାରିଆଡ଼େ ନବ ଜୀବନର (New Birth) ସ୍ରୋତ ଖେଳିଗଲା । ଏହି ସ୍ରୋତ ନବୀକରଣ (Renaissance) ବୋଲି ଖ୍ୟାତ । ନବୀକରଣ ହେତୁ ବିଜ୍ଞ

ବଡ଼ ସାହିତ୍ୟିକ, ପଣ୍ଡିତ, ଜ୍ଞାନୀ ଓ ମନୀଷୀମାନଙ୍କର ଆବିର୍ଭାବ ହେଲା । ସେମାନେ ଦେଶରେ ନବ ନବ ଭାବ ପ୍ରଚାର କଲେ । ସହସ୍ର ସହସ୍ର ପୁସ୍ତକ ଲେଖିଲେ । ଛାପାକଳ ଆବିଷ୍କାର କଲେ । ବିଦ୍ୟା କେବଳ ଯାଜକ ଓ ସନ୍ନ୍ୟାସୀମାନଙ୍କର ଅଧିକୃତ ହୋଇ ରହି ପାରିଲା ନାହିଁ ।

ଲୁଥର ନାମରେ ଏକ ପ୍ରସିଦ୍ଧ ବ୍ୟକ୍ତି ଧର୍ମଜଗତରେ ଏକ ମହାବିଦ୍ରୋହ ଆରମ୍ଭ କଲେ । ସେ କହିଲେ, ପୋପ ଓ ତାଙ୍କ ଯାଜକମାନେ ବ୍ୟଭିଚାର ଓ ଆଳସ୍ୟରେ କାଳକ୍ଷେପଣ କରୁଛନ୍ତି ସେମାନେ ଅତି ଅପଦାର୍ଥ, କିଛି ଜାଣନ୍ତି ନାହିଁ । ଲୋକମାନେ ସେମାନଙ୍କ କଥା ନ ମାନି ନିଜେ ଧର୍ମଗ୍ରନ୍ଥ ବାଇବଲ ପଢ଼ନ୍ତୁ ଏବଂ ସେହି ବାଇବଲର କଥା ଅନୁସାରେ ଚଳନ୍ତୁ । ନବୀକରଣ ଲୋକଙ୍କର ସ୍ୱାଧୀନଚିନ୍ତା ଜାତ କରାଇଥିଲା । ଲୁଥରଙ୍କ ପ୍ରଚାର ସେମାନଙ୍କୁ ଭଲ ଲାଗିଲା । ସେମାନେ ତାଙ୍କ କଥାର ଯୁକ୍ତି ବୁଝି ପାରିଲେ । ଅନେକ ରାଜା, ଅନେକ ଦେଶ ପୋପଙ୍କୁ ଆଉ ମାନିଲେ ନାହିଁ । ସେମାନଙ୍କୁ ପ୍ରୋଟେଷ୍ଟାଣ୍ଟ ବା ପ୍ରତିବାଦୀ କୁହାଗଲା । ଲୁଥରଙ୍କ ଏହି ଧର୍ମସଂସ୍କାର ରିଫର୍ମେଶନ (Reformation) ବୋଲି ପରିଚିତ ।

ଏତେବେଳେ ଅନେକ ପ୍ରସିଦ୍ଧ ନାବିକ ମଧ୍ୟ ଜାତ ହୋଇଥିଲେ । ସେମାନେ ଜଳପଥରେ ଦେଶଦେଶାନ୍ତରକୁ ଯିବାର ବାଟ ଆବିଷ୍କାର କରିଥିଲେ । ଭାରତକୁ ଆଫ୍ରିକା ବେଷ୍ଟନ କରି ଯିବାର ଚେଷ୍ଟା କରି ଜେନୋଆର ନାବିକ କଲମ୍ବସ୍ ଆମେରିକା ଆବିଷ୍କାର କରିଥିଲେ । ପର୍ତ୍ତୁଗାଲର ନାବିକ ଭାସ୍କୋଡଗାମା ଭାରତକୁ ଆସିବାର ଚେଷ୍ଟା ପୁଣି କଲେ ଏବଂ ଆଫ୍ରିକାର ଉତ୍ତମାଶା ଅନ୍ତରୀପ ବେଷ୍ଟନ କଲେ । ସେ ସେଠାରୁ ଭାରତର କାଲିକଟ ରାଜ୍ୟରେ

ଛାଡ଼ିଥିଲେ । ବ୍ରିଷ୍ଟଲର ନାବିକ ଜନ କେବଟ ଉତ୍ତର ଅମେରିକାରେ ନିଉଫାଉଣ୍ଡ୍‌ଲଣ୍ଡ, କେପ ବ୍ରେଟନ, ନୋଭାସ୍କୋଟିଆ ଆବିଷ୍କାର କଲେ ।

ଲୋକେ ଅମେରିକା ମହାଦେଶ ଥିବାର ଇତି ପୂର୍ବେ ଜାଣି ନ ଥିଲେ । ଏହିସବୁ ଆବିଷ୍କାର ସେମାନଙ୍କର ଭୌଗୋଳିକ ଜ୍ଞାନରେ ଏକ ବିପ୍ଳବ ଆରମ୍ଭ କରିଦେଲା । ସେମାନେ ଏହି ବିଶାଳ ପୃଥିବୀକୁ ମାପି ଯୋଖି ସସୀମ କରିବାର ଚେଷ୍ଟାରେ ଲାଗିଲେ ।

ବଡ଼ ବଡ଼ ଜ୍ୟୋତିର୍ବିଦମାନେ ବାହାରି ଲୋକଙ୍କର କୁସଂସ୍କାରମାନ ଦୂର କରିବାରେ ଲାଗିଲେ । କୋପରନିକସ୍ ନାମକ ଏକ ବଡ଼ ପଣ୍ଡିତ କହିଲେ, "ପୃଥିବୀ ସୌରଜଗତର କେନ୍ଦ୍ର ନୁହେଁ; ସୂର୍ଯ୍ୟ ତାହାର କେନ୍ଦ୍ର । ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରୁଛି; ପୃଥିବୀ ଚାରିପଟେ ସୂର୍ଯ୍ୟ ଘୂରୁ ନାହିଁ ।" ତୁମ୍ଭେମାନେ ପୂର୍ବେ ପଢ଼ିଛ, ବେକନ୍ ଗୋଟିଏ ସାମାନ୍ୟ ନୂଆ କଥା କହିବାରୁ ଲୋକେ ତାଙ୍କୁ ଜେଲ ଦେଇଥିଲେ । କୋପରନିକସଙ୍କ କଥା ଯଦି ବେକନ କହିଥାନ୍ତେ, କଣ ହୋଇ ନ ଥାନ୍ତା ? ଯୁଗ କ୍ରମେ ବଦଳି ଯାଉଥିଲା । ଲୋକେ ଏତେବେଳକୁ ନିଜ ନିଜ ଭ୍ରମ ଓ କୁସଂସ୍କାର ବୁଝି ପାରିବାକୁ ସମର୍ଥ ହୋଇଥିଲେ । ସେମାନେ ବୁଝି ପାରିଥିଲେ, ସେମାନଙ୍କର ଯାହା ଜ୍ଞାନ ପୂର୍ବରୁ ଥିଲା, ତାହା ଜ୍ଞାନର ସୀମା ବା ସୀମାନ୍ତ ନୁହେ । ସେମାନଙ୍କ ଜାଣିବା ସକାଶେ ଆହୁରି ଅନେକ କଥା ବାକୀ ଅଛି ।

ଏ ସମସ୍ତ ନୂତନ ଜ୍ଞାନର ଏକ ଶୁଭମୟ ଫଳ ଦେଖାଗଲା :— ଅନ୍ଧବିଶ୍ୱାସର ଯୁଗ ଚାଲିଗଲା । ପ୍ରତି କଥାରେ ଲୋକେ କାରଣ ଖୋଜି ବସିବାକୁ ଶିଖିଲେ । କେହି କିଛି କହିଲେ ବା କରିବାକୁ ବସିଲେ, ସେମାନେ ସ୍ୱତଃ ପ୍ରଶ୍ନ କରିବାକୁ ଶିଖିଲେ; "କାହିଁକି ?

କହନ୍ତି କଣ ?" କି ଧର୍ମ, କି ସମାଜ, କି ରାଜନୀତି, ପ୍ରତି କ୍ଷେତ୍ରରେ ଲୋକେ ବିନା ବିଚାରରେ କାହାକୁ ମାନିବାକୁ ପ୍ରସ୍ତୁତ ହେଲେ ନାହିଁ । ସେମାନଙ୍କ ସ୍ୱାଧୀନଚିନ୍ତାର ଏକ ନବ ଜାଗରଣର ବେଳ ଆସି ଉପସ୍ଥିତ ହେଲା । ପ୍ରାଚୀନ ଯୁଗକୁ ପଛକୁ ପକାଇ ଲୋକେ ଏକ ନୂତନ ପନ୍ଥାରେ ପଥିକ ହେବାକୁ ବାହାରିଲେ ।

---

ନୂଆ ଦେଶସବୁ ଆବିଷ୍କୃତ ହେବାରୁ ଏବଂ ନୌବିଦ୍ୟାର ଉନ୍ନତି ହେବାରୁ ଦେଶେ ବାଣିଜ୍ୟ ବଢ଼ିଲା । ଏଲିଜାବେଥଙ୍କ ରାଜତ୍ୱରେ ଇଂଲଣ୍ଡର ଇଷ୍ଟଇଣ୍ଡିଆ କମ୍ପାନି ସ୍ଥାପିତ ହୋଇଥିଲା । ଇଂଲଣ୍ଡର ବଣିକମାନେ ସମ୍ମିଳିତ ହେବେ ଏବଂ ବାଣିଜ୍ୟ ବ୍ୟବସାୟର ଆଲୋଚନା କରିବେ ବୋଲି ଗୋଟିଏ ବଡ଼ ଅଟ୍ଟାଳିକା ନିର୍ମାଣ କରିଥିଲେ । ଏହି ଘରକୁ ରୟେଲ୍ ଏକ୍ସ୍‌ଚେଞ୍ଜ୍ କହନ୍ତି ।

ଫ୍ରାନ୍ସ ଓ ହଲଣ୍ଡରୁ ଅନେକ ତନ୍ତୀ ପଳାଇ ଆସି ଇଂଲଣ୍ଡରେ ବାସ କରିଥିଲେ । ଏମାନେ ଇଂଲଣ୍ଡରେ ରହି ଭଲ ଭଲ ଲୁଗା ବୁଣିଲେ ଏବଂ ସେମାନଙ୍କଠାରୁ ଲୋକେ ଭଲ ଲୁଗା ବୁଣା ଶିଖିଲେ । ଫଳରେ ଦେଶରେ କୃଷିଶିଳ୍ପ, ତୁଳା ଓ ପଶମର କାରବାର ଉନ୍ନତିଲାଭ କଲା । ଇଂଲଣ୍ଡ ଯାହା ବିଦେଶରୁ ଲୁଗା ଆଣୁଥିଲା, ଏଣିକି ବିଦେଶକୁ ଲୁଗା ପଠାଇବାକୁ ଆରମ୍ଭ କଲା ।

ଇଂରେଜମାନେ ଦେଶ ବିଦେଶକୁ, ବିଶେଷରୂପେ ଆମେରିକାକୁ ଯାଇ ସେଠାରେ ଉପନିବେଶ ସ୍ଥାପନ କଲେ । ସେମାନେ ଆମେରିକାରୁ ଗୋଲଆଳୁ ଓ ତମାଖୁ ଆଣି ଇଂଲଣ୍ଡରେ ଚାଷ କଲେ । ନୂଆ ନୂଆ ଶସ୍ୟର ଚାଷ ଇଂଲଣ୍ଡରେ ଆରମ୍ଭ ହେଲା ।

ଏହି ସମୟର ଶେଷ ଅଡ଼କୁ ଇଂଲଣ୍ଡରେ କେତେକ ବଡ଼ ବଡ଼ ପଣ୍ଡିତ ଓ କବି ଜନ୍ମଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ କବି-ସମ୍ରାଟ୍ ସେକ୍‌ସ୍‌ପିଅର ପ୍ରଧାନ ଥିଲେ । ତାଙ୍କ ପରି କବି ଓ ନାଟକ ଲେଖକ ଏପର୍ଯ୍ୟନ୍ତ ଇଂଲଣ୍ଡରେ ଅନ୍ୟ କେହି ଜନ୍ମଗ୍ରହଣ କରି ନାହାନ୍ତି ।

ଦେଶରେ ନାନାଦିଗରୁ ଧନ ସମୃଦ୍ଧି ବଢ଼ିବାକୁ ଲାଗିଲା । ଫଳରେ ଗୃହମାନଙ୍କରେ ନାନାପ୍ରକାର ଉପକରଣ ବ୍ୟବହାର କରାଗଲା । ଗୃହମାନଙ୍କରେ ଆଗରୁ ବଡ଼ ବଡ଼ ଝରକା ଓ କବାଟ ନ ଲାଗି ଥିଲା । ସେଗୁଡ଼ିକ ଅନ୍ଧାରୁଆ ହୋଇଥିଲା । ଲୋକେ ନୂଆ ଧରଣରେ ବଡ଼ ବଡ଼ କବାଟ ଝରକା ଲଗାଇ ଘରଗୁଡ଼ିକ ଆଲୋକିତ ଓ ସୁନ୍ଦର କଲେ । ଫୁଲଦାର ପରଦା, ସତରଞ୍ଜି, ତକିଆ ପ୍ରଭୃତିର ବ୍ୟବହାର ହେଲା । ଲୋକେ ହାତରେ ଖାଇବା ବନ୍ଦ କରି ଚାମଚ, ଫର୍କ ପ୍ରଭୃତି ବ୍ୟବହାର କଲେ । ପୋଷାକରେ ମଧ୍ୟ



ଏଲିଜାବେଥଙ୍କ ଅମଳର ଘୋଡ଼ାଗାଡ଼ି

ଆଡ଼ମ୍ବର ଦେଖାଗଲା । ଲୋକେ ଯିବା ଆସିବା ପାଇଁ ଏବଂ ସରକାର ତାଙ୍କ ଡାକ ପଠାଇବା ପାଇଁ ଘୋଡ଼ାଗାଡ଼ି ବ୍ୟବହାର କଲେ ।

# (୨୨)

## ପ୍ରଥମ ଜେମ୍ସ

ସପ୍ତମ ହେନ୍‌ରୀଙ୍କ କନ୍ୟା ମାର୍ଗାରେଟ୍, ସ୍କଟଲଣ୍ଡର ଚତୁର୍ଥ-ଜେମ୍‌ସଙ୍କୁ ବିବାହ କରିଥିଲେ । ତାଙ୍କ ବଂଶଧର ଷଷ୍ଠ ଜେମ୍‌ସ ଏଲିଜାବେଥଙ୍କ ପରେ ଇଂଲଣ୍ଡର ରାଜା ହେଲେ । ବର୍ତ୍ତମାନ ଇଂଲଣ୍ଡ ଓ ସ୍କଟଲଣ୍ଡରେ ଜଣେ ରାଜା ହେଲେ । ଫଳରେ ଦୁଇରାଜ୍ୟ ମଧ୍ୟରେ ବହୁଦିନରୁ ଲାଗିଥିବା ଯୁଦ୍ଧ ବିବାଦ ପ୍ରକୃତ ବନ୍ଦ ହେଲା । କିନ୍ତୁ ଏଥିରେ ଦୁଇ ରାଜ୍ୟ ସମ୍ପୂର୍ଣ୍ଣରୂପେ ମିଶି ନ ଥିଲା । ଦୁଇ ରାଜ୍ୟରେ ଦୁଇ ଗୋଟି ପାର୍ଲିଆମେଣ୍ଟ ଥିଲା । ଦୁଇ ରାଜ୍ୟର ଆଇନ ଭିନ୍ନ ଭିନ୍ନ ଥିଲା । ଷଷ୍ଠ ଜେମ୍‌ସ ରାଜା ହୋଇ ଇଂଲଣ୍ଡର ପ୍ରଥମ ଜେମ୍‌ସ ହେଲେ ଏବଂ "କିଙ୍ଗ୍ ଅବ ଗ୍ରେଟ୍‌ବ୍ରିଟେନ୍" ଉପାଧି ଗ୍ରହଣ କଲେ ।

ଇଂଲଣ୍ଡ ସ୍କଟଲଣ୍ଡ ଅପେକ୍ଷା ଅନେକ ଗୁଣରେ ଧନଶାଳୀ ଥିଲା । ଜେମ୍‌ସ ସ୍କଟଲଣ୍ଡ ଛାଡ଼ି ଇଂଲଣ୍ଡକୁ ଆସି ବଡ଼ ଖୁସିରେ ରାଜା ହେଲେ ।

ଆୟର୍ଲଣ୍ଡରେ ବହୁସଂଖ୍ୟକ କ୍ୟାଥଲିକ୍ ଥିଲେ । ସେମାନେ ଇଂଲଣ୍ଡର ପ୍ରୋଟେଷ୍ଟାଣ୍ଟ ରାଜାଙ୍କୁ ଭଲ ପାଉ ନ ଥିଲେ । ପ୍ରୋଟେଷ୍ଟାଣ୍ଟମାନେ ଯାଇ ଆୟର୍ଲଣ୍ଡରେ ବାସ କଲେ ସେଠାରେ ରାଜାଙ୍କ କ୍ଷମତା ବଢ଼ିବ ଭାବି, ଜେମସ୍ କେତେକ ପ୍ରୋଟେଷ୍ଟାଣ୍ଟ ଇଂରେଜଙ୍କୁ ବାସ କରିବା ନିମନ୍ତେ ଆୟର୍ଲଣ୍ଡକୁ ଛାଡ଼ିଦେଲେ ।

ପ୍ରୋଟେଷ୍ଟାଣ୍ଟମାନଙ୍କ ମଧ୍ୟରୁ କେତେକ ଚରମପନ୍ଥୀ ଥିଲେ । ସେମାନେ ଇଂଲଣ୍ଡର ଧର୍ମରେ ବିଶେଷ ପରିବର୍ତ୍ତନ ଆଣିବାକୁ ଇଚ୍ଛା କରୁଥିଲେ । ଏଲିଜାବେଥ୍ ଧର୍ମର ଯେଉଁ ବିଧି ବ୍ୟବସ୍ଥା କରିଥିଲେ

ସେଥିରେ ସେମାନେ ଅସନ୍ତୁଷ୍ଟ ହୋଇ ରହିଥିଲେ । ଜେମ୍ସ ମଧ୍ୟ ସେମାନଙ୍କ ଇଚ୍ଛା ଅନୁସାରେ ଧର୍ମର ବାଧିରେ ପରିବର୍ତ୍ତନ କଲେ ନାହିଁ; ତେଣୁ ସେମାନେ ଇଂଲଣ୍ଡ ଛାଡ଼ି ଅମେରିକାକୁ ଗୁଳ୍‌ଗଲେ ଏବଂ ଆମେରିକାର ଭାର୍ଜିନିଆ, ନିଉ-ଇଂଲଣ୍ଡ, ମେସେଚ୍ୟୁସେଟ୍‌ସ୍ ପ୍ରଭୃତି ସ୍ଥାନମାନ ସ୍ଥାପନ କଲେ । ଏଗୁଡ଼ିକୁ ନେଇ ଆଜିକାଲି ଅମେରିକାର ଯୁକ୍ତରାଜ୍ୟ ଗଠିତ ହୋଇଅଛି । ଯେଉଁ ଇଂରେଜମାନେ ଅମେରିକାକୁ ଗଲେ ସେମାନଙ୍କୁ "ପିଲ୍‌ଗ୍ରୀମ୍ ଫାଦରସ୍" କହନ୍ତି ଏବଂ ସେମାନଙ୍କର ଜାହାଜକୁ "ମେ-ଫ୍ଲାଓ୍ୟାର" କହନ୍ତି । ମେ-ଫ୍ଲାଓ୍ୟାର ୧୬୨୦ ଖ୍ରୀ: ଅ: ରେ ଇଂଲଣ୍ଡରୁ ବାହାରିଥିଲା ।

ଇଂଲଣ୍ଡର ରାଜା ହୋଇ ଜେମ୍ସ କହିଲେ, "ମୁଁ ରାଜା, ମୁଁ ଈଶ୍ୱରଙ୍କ ପ୍ରତିନିଧି । ମୁଁ ଐଶ୍ୱରିକ କ୍ଷମତା ନେଇ ରାଜା ହେବାକୁ ଜନ୍ମିଅଛି । ମୋତେ ଭଗବାନ ସିଂହାସନ ଦେଇଛନ୍ତି । ମୁଁ ଯାହା ଇଚ୍ଛା ତାହା କରିବି । ପାର୍ଲିଅମେଣ୍ଟ କିଏ ? ପ୍ରଜାମାନେ କିଏ ? ସେମାନେ କାହିଁକି ମୋତେ ଉପଦେଶ ଦେବେ ? ମୁଁ କାହିଁକି ସେମାନଙ୍କ ପରାମର୍ଶ ଅନୁସାରେ ଶାସନ କରିବି ? ଆଇନ କିଏ ? ଆଇନ ମୁହିଁଠାରେ ରାଜା, ନା ରାଜାର ମୁହିଁରେ ଆଇନ ? ରାଜା ସବୁ କରି ପାରେ । ଯେ କହେ ରାଜା ଏହା କରି ପାରେ, ତାହା କରି ପାରେ ନା, ସେ ନାସ୍ତିକ । ଭଗବାନଙ୍କ ଉପରେ ତାହାର ବିଶ୍ୱାସ ନାହିଁ । ଭଗବାନ୍ ଯେପରି ସବୁ କରି ପାରନ୍ତି, ରାଜା ସେହିପରି ସବୁ କରି ପାରନ୍ତି ।"

ଜେମ୍ସ ପ୍ରକୃତରେ ଇଂରେଜ ପ୍ରଜାମାନଙ୍କର ମନର ଗତି ବୁଝି ପାରି ନ ଥିଲେ । ଇଂରେଜମାନଙ୍କ ସଦା ସେ ଏସବୁ କଥା କହୁଛି ନ କହି, ସେମାନଙ୍କୁ ରାଜ କଥା ଅନୁସାରେ 'ଏପରି ଆଇନ କର, ସେପରି ଆଇନ କର ନା' ବୋଲି କହୁଥାନ୍ତେ, ଇଂରେଜ ପାର୍ଲିଅମେଣ୍ଟ

ତାଙ୍କ କଥା ମାନି ସେସବୁ କାର୍ଯ୍ୟ କରିଥାନ୍ତା; କିନ୍ତୁ ସେ ପାର୍ଲିଆମେଣ୍ଟ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରିବା ହେତୁ ପାର୍ଲିଆମେଣ୍ଟ ଭିତର ଚିଡ଼ିଗଲା । ସେମାନେ ଜେମ୍‌ସଙ୍କ କଥାର ପ୍ରତିବାଦ ଆରମ୍ଭ କଲେ ।

ଏହା ପରେ ଜେମ୍‌ସ ପାର୍ଲିଆମେଣ୍ଟକୁ ନ ପଚାରି କେତେକ ଖଜଣା ବସାଇଲେ । ପାର୍ଲିଆମେଣ୍ଟ ଏଥିର ପ୍ରତିବାଦ କଲା । ଜେମ୍‌ସ ବିରକ୍ତ ହୋଇ ପାର୍ଲିଆମେଣ୍ଟକୁ ଭାଙ୍ଗି ଦେଲେ । ତା ପରେ ତାଙ୍କର ଟଙ୍କାର ଅଭାବ ହେବାରୁ ସେ ପୁଣି ଏକ ନୂଆ ପାର୍ଲିଆମେଣ୍ଟ ଡାକିଲେ । ଏଥର ପାର୍ଲିଆମେଣ୍ଟ ତାଙ୍କୁ ଟଙ୍କା ମଞ୍ଜୁର କଲା ନାହିଁ, କି ଶାସନ ପାଇଁ ଆଇନ ମଧ୍ୟ ଗଢ଼ିଲା ନାହିଁ । ଜେମ୍‌ସ ସେଠୁଁ ସାତ ବର୍ଷ ପର୍ଯ୍ୟନ୍ତ ପାର୍ଲିଆମେଣ୍ଟ ସଭା ଡାକିଲେ ନାହିଁ ।

ପାର୍ଲିଆମେଣ୍ଟ ଓ ରାଜାଙ୍କ ମଧ୍ୟରେ ଏହିପରି ଗୋଳମାଳ ଚାଲିଲା । ଜେମସ୍ ଟଙ୍କା ପାଇଁ କେତେକ ଏକ ଚାଟିଆ ଅଧିକାର (monopoly) ଲୋକଙ୍କୁ ବିକିଲେ । ପାର୍ଲିଆମେଣ୍ଟ ଅଧିକ ଚିଡ଼ି-ଗଲା । ଉତ୍କୋଚ ନେଇଛନ୍ତି ବୋଲି ଆପତ୍ତି କରି ରାଜାଙ୍କ ପ୍ରଧାନ ମନ୍ତ୍ରୀ ବେକନଙ୍କୁ ପାର୍ଲିଆମେଣ୍ଟ ବନ୍ଦୀ କଲା ।

ଏହା ପରେ ଜେମ୍‌ସ ସ୍ପେନ ସଙ୍ଗେ ଯୁଦ୍ଧ ଘୋଷଣା କଲେ ଏବଂ ପାର୍ଲିଆମେଣ୍ଟକୁ ଟଙ୍କା ମାଗିଲେ । ଶତ୍ରୁଙ୍କୁ ସ୍ପେନକୁ ହରାଇବା ନିମନ୍ତେ ପାର୍ଲିଆମେଣ୍ଟ ଟଙ୍କା ମଞ୍ଜୁର କଲା; କିନ୍ତୁ ଜେମ୍‌ସ ଯୁଦ୍ଧରେ ଯଥେଷ୍ଟ ଟଙ୍କା ଖରଚ କଲେ ନାହିଁ ଏବଂ ତହିଁରେ ହାରିଲେ ।

ଏହି ଅବସ୍ଥାରେ ୧୬୨୫ ଖ୍ରୀ: ଅ: ରେ ଜେମସଙ୍କର ମୃତ୍ୟୁ ଘଟିଲା ।

---

## (୨୩)

## ପ୍ରଥମ ଚାର୍ଲସ୍

ଜେମ୍‌ସ ଯେପରି ନିଜକୁ ଈଶ୍ୱରଙ୍କ ଅଭିଷିକ୍ତ ପ୍ରତିନିଧି ବୋଲି ଐଶ୍ୱରିକ କ୍ଷମତା ଦାବି କରୁଥିଲେ, ତାଙ୍କ ପୁତ୍ର ପ୍ରଥମ ଚାର୍ଲସ ମଧ୍ୟ ସେହିପରି ଐଶ୍ୱରିକ କ୍ଷମତା ଦାବି କଲେ । ସେ ପାର୍ଲିଅମେଣ୍ଟର ଅନୁମତି ବିନା ବିଦେଶରୁ ଆସୁଥିବା ଏବଂ ବିଦେଶକୁ ଯାଉଥିବା ମାଲ ଉପରେ ଶୁଳ୍କ ବସାଇଲେ । ସ୍ପେନ୍ ସଙ୍ଗେ ଯୁଦ୍ଧ ଚାଲିଥିବାରୁ ଚାର୍ଲସଙ୍କ ଟଙ୍କାର ଅଭାବ ପଡ଼ିଲା; କିନ୍ତୁ ପାର୍ଲିମେଣ୍ଟ ତାଙ୍କୁ ଟଙ୍କା ମଞ୍ଜୁର କଲା ନାହିଁ ।

ଚାର୍ଲସ ବାଧ୍ୟ ହୋଇ ଲୋକମାନଙ୍କଠାରୁ ଋଣ ଗ୍ରହଣ କଲେ । ଯେଉଁମାନେ ଋଣ ଦେଲେ ନାହିଁ, ସେମାନଙ୍କ ଘରକୁ ସୈନ୍ୟମାନଙ୍କୁ ପଠାଇଲେ ଏବଂ ସୈନ୍ୟମାନଙ୍କୁ କହିଲେ, "ତୁମ୍ଭେମାନେ ସେମାନଙ୍କ ଘରେ ଯାଇ ରହ ।" କେତେକଙ୍କୁ ଚାର୍ଲସ ଜେଲଖାନାରେ ଭରତି କରି ରଖିଲେ ।

ପାର୍ଲିଅମେଣ୍ଟ ଏଥିରେ ଅତିଶୟ ଚିଡ଼ିଗଲା । ଯେତେବେଳେ ପାର୍ଲିଅମେଣ୍ଟ ବସିଲା, ସେହି ସଭାରେ ଗୋଟିଏ ନୂତନ ଚିଠା ତିଆରି ହେଲା । ଏହି ଚିଠାକୁ "ଅଧିକାର-ଦରଖାସ୍ତ" କହନ୍ତି । ଚାର୍ଲସ ସେହି ଅଧିକାର-ଦରଖାସ୍ତକୁ ବାଧ୍ୟ ହୋଇ ମଞ୍ଜୁର କଲେ । ମହାସନନ୍ଦ ପରେ ଏହି "ଅଧିକାର-ଦରଖାସ୍ତ" ରାଜାଙ୍କ ଯଥେଚ୍ଛାଚାର ଶାସନରେ ବାଧା ଦେବାଦିଗରେ ଦ୍ୱିତୀୟ କ୍ଷମତାପନ୍ନ ହେଲା । ସେଥିରେ ଥିବା କେତେକ ପ୍ରଧାନ ସର୍ତ୍ତ ନିମ୍ନରେ ଲିଖିତ ହେଲା :—

(୧) ପାର୍ଲିଅମେଣ୍ଟ ମହାସଭାର ଅନୁମତି ବିନା ରାଜା କର ବା ଋଣ ଆଦାୟ କରି ପାରିବେ ନାହିଁ ।



ପ୍ରଥମ ଚାର୍ଲସ୍

(୨) ବିନା କାରଣରେ ରାଜା କାହାରିକୁ ବନ୍ଦୀ କରି ପାରିବେ ନାହିଁ ।

(୩) ରାଜା ବ୍ୟକ୍ତିବିଶେଷର ~~[illegible] ଘର~~ ସୈନିକମାନଙ୍କୁ ବଳପୂର୍ବକ ଆଶ୍ରୟ ନେବା ସକାଶେ ଆଦେଶ ଦେଇ ପାରିବେ ନାହିଁ ।

ରାଜା "ଅଧିକାର-ଦରଖାସ୍ତ"ରେ ସ୍ୱାକ୍ଷର କଲେ, କିନ୍ତୁ ପୁଣି ଯଥେଚ୍ଛାଚାର ଶାସନ ଆରମ୍ଭ କଲେ । ୧୬୨୯ ଖ୍ରୀଃ ଅଃ ରେ ସେ ପାର୍ଲିଆମେଣ୍ଟ

ଭାଙ୍ଗିଦେଲେ ଏବଂ ୧୬୪୦ ଖ୍ରୀ: ଅ: ପର୍ଯ୍ୟନ୍ତ ୧୧ ବର୍ଷ ବିନା ପାର୍ଲିଅ-ମେଣ୍ଟରେ ଶାସନକାର୍ଯ୍ୟ ଚଳାଇଲେ । ଦେଶର ନୌଶକ୍ତି ବଢ଼ାଇବେ ବୋଲି କହି ଲୋକଙ୍କଠାରୁ ନୌଶୁଳ୍କ (Shipmoney) ଆଦାୟ କଲେ । ଜନ ହାମ୍ପଡେନ୍ ଜଣେ ସାଧାରଣ ଲୋକ । କହିଲେ, "ପାର୍ଲିଅମେଣ୍ଟ ନ କହିଲେ, ମୁଁ ଏ ଶୁଳ୍କ ଦେବି ନାହିଁ ।" ରାଜା ତାଙ୍କୁ ବନ୍ଦୀ କଲେ ଏବଂ ଅଦାଲତରେ ତାଙ୍କର ବିଚାର ହେଲା । ବାରଜଣ ବିଚାରପତିଙ୍କ ମଧ୍ୟରୁ ସାତ ଜଣ ରାଜାଙ୍କ ସପକ୍ଷରେ ଏବଂ ପାଞ୍ଚ ଜଣ ହାମ୍ପଡେନଙ୍କ ସପକ୍ଷରେ ମତ ଦେଲେ; ସୁତରାଂ ହାମ୍ପଡେନ୍ ହାରିଲେ ।

କେଣ୍ଟାର୍‌ବେରିର ପ୍ରଧାନ ଧର୍ମଯାଜକ ଲଡ଼ । ଲଡ଼ ସ୍କଟ୍‌ଲଣ୍ଡର ଗିର୍ଜାମାନଙ୍କରେ ଇଂରାଜୀ ଉପାସନା ପୁସ୍ତକ ଚଳାଇବାକୁ ଆଦେଶ ଦେଲେ । ଏଥିରେ ସ୍କଟଲଣ୍ଡର ଲୋକେ ଅତ୍ୟନ୍ତ ଚିଡ଼ିଗଲେ । ସେମାନେ ସମସ୍ତେ ମିଳି ଶପଥ କଲେ, "ଆମ୍ଭେ-ମାନେ ଈଶ୍ୱରଙ୍କ ନାମରେ ଶପଥ କରୁଅଛୁଁ ଯେ ଆମ୍ଭେମାନେ ଜୀବନ ଥିବା ପର୍ଯ୍ୟନ୍ତ ନିଜ ନିଜ ଧର୍ମମତ ରକ୍ଷା କରିବୁଁ ଏବଂ ତହିଁର ବିପରୀତ ଯେ କୌଣସି



ଲଡ଼୍

ଧର୍ମମତ ଗ୍ରହଣ କରିବୁ ନାହିଁ ।" ସ୍କଟ୍‌ମାନେ ଏହି ପ୍ରତିଜ୍ଞାକୁ "ଜାତୀୟ ପ୍ରତିଜ୍ଞା" କହନ୍ତି । ଲଡ଼ କିନ୍ତୁ ମାନିବାର ପାତ୍ର ନ ଥିଲେ । ସେ ସ୍କଟ୍‌ଲଣ୍ଡରେ ଇଂରାଜୀ ଭାଷାର ଉପାସନା ପୁସ୍ତକ ଚଳାଇବା

ନିମନ୍ତେ ବଳ ପ୍ରୟୋଗ କଲେ । ସ୍କଟ୍‌ମାନେ ଯୁଦ୍ଧ ସକାଶେ ପ୍ରସ୍ତୁତ ହୋଇ ଇଂଲଣ୍ଡ ଆକ୍ରମଣ କଲେ ଏବଂ ଇଂଲଣ୍ଡର ଉତ୍ତରାଞ୍ଚଳ ଅଧିକାର କଲେ । ସେମାନେ ଯୁଦ୍ଧର କ୍ଷତିପୂରଣ ସକାଶେ ୮୫୦ ପାଉଣ୍ଡ ଦାବି କଲେ । ଚାର୍ଲସ୍ ଆଉ କରିବେ କଣ ? ସେ ୧୬୪୦ ଖ୍ରୀ: ଅ: ରେ ପୁଣି ପାର୍ଲିମେଣ୍ଟ ଡାକିଲେ ।

ଏଥର ପାର୍ଲିଆମେଣ୍ଟ ସୁବିଧା ପାଇଲା । ରାଜାଙ୍କର ଅତ୍ୟାଚାର ଶେଷ କରିବ ବୋଲି ବସିଲା । ଯେଉଁ କର୍ମଚାରୀମାନେ ରାଜାଙ୍କ ଅତ୍ୟାଚାର କରିବାପାଇଁ ସାହାଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରୁ ପ୍ରଧାନ ପ୍ରଧାନମାନଙ୍କୁ ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ କଲା । ଲର୍ଡ଼ ୧୬୪୫ ଖ୍ରୀ: ଅ: ରେ ପ୍ରାଣଦଣ୍ଡ ପାଇଲେ । ଅନ୍ୟ ପ୍ରଧାନ ସାହାଯ୍ୟକାରୀ ଷ୍ଟ୍ରାଫୋର୍ଡ଼ ମଧ୍ୟ ପ୍ରାଣଦଣ୍ଡ ପାଇଲେ । ପ୍ରତି ତିନି ବର୍ଷରେ ରାଜା ଅନ୍ତତଃ ଥରେ ପାର୍ଲିଆମେଣ୍ଟ ଡାକିବେ ଏବଂ ତାହା ଭାଙ୍ଗି ପାରିବେ ନାହିଁ ବୋଲି ଆଇନ ତିଆରି ହେଲା ।

ପାଞ୍ଚ ଜଣ ସଦସ୍ୟ ରାଜାଙ୍କର ସମସ୍ତ ଅତ୍ୟାଚାରର ନିନ୍ଦାବାଦ କରିବା ନିମନ୍ତେ ଏକ ବିଲ୍ ଆଣିଲେ । ଏଥିରେ ମହାସଭାକୁ ଦୁଇ ଦଳରେ ବିଭକ୍ତ ହେବାର ଦେଖି ଚାର୍ଲସଙ୍କ ସାହସ ପୁଣି ବଢ଼ିଗଲା । ସେ ନେତାମାନଙ୍କୁ ବନ୍ଦୀ କରିବାକୁ ବାହାରିଲେ ଏବଂ ସୈନ୍ୟ ଆଣି ସଭାଗୃହରେ ପଶିଲେ । ପାର୍ଲିଆମେଣ୍ଟରେ ଥିବା ପର୍ଯ୍ୟନ୍ତ କୌଣସି ସଦସ୍ୟଙ୍କୁ ରାଜା ବନ୍ଦୀ କରି ପାରନ୍ତି ନାହିଁ । ଚାର୍ଲସ ଆଇନବିରୁଦ୍ଧ କାର୍ଯ୍ୟ କରିବାକୁ ଯାଉଥିବାରୁ ସମସ୍ତ ସଦସ୍ୟ ବଡ଼ ପାଟିରେ ଚିତ୍କାର କରିବାକୁ ଲାଗିଲେ, "କ୍ଷମତା" "କ୍ଷମତା"। ଏହିପରି ଚିତ୍କାର ବେଳେ ପାଞ୍ଚଜଣଯାକ ସଦସ୍ୟ ସଭାଗୃହରୁ ଖସି ଚାଲିଗଲେ ।

ଚାର୍ଲସ ସଭାର ବକ୍ତାଙ୍କୁ ପଚାରିଲେ, "ସେହି ପାଞ୍ଚଜଣ ସଦସ୍ୟ କାହାନ୍ତି ?" ବକ୍ତା କହିଲେ, "ମହାରାଜ ଶୁଣନ୍ତୁ । ଏହି

ସଭାଗୃହରେ ଥିବା ପର୍ଯ୍ୟନ୍ତ ପାର୍ଲିଆମେଣ୍ଟର ଆଦେଶ ବିନା ମୋର କିଛି ଶୁଣିବାକୁ କାନ ନାହିଁ କିମ୍ବା କିଛି ଦେଖିବାକୁ ଆଖି ନାହିଁ ।” ରାଜା କହିଲେ, “ହଉ, ମୋର ଆଖି ଅଛି । ମୁଁ ଦେଖୁଛି । ପକ୍ଷୀମାନେ ଉଡ଼ି ଯାଇଅଛନ୍ତି। ସେମାନେ ଏଠାକୁ ପୁନଃ ଆସିଲେ, ମୁଁ ଆଶା କରେଁ, ତୁମ୍ଭେ ମୋ ଠାକୁ ପଠାଇ ଦେବ ।” ରାଜାଙ୍କ ଆଦେଶ କେହି ପାଳନ କଲେ ନାହିଁ ।

ଏହାଦ୍ୱାରା ରାଜା ନିଜେ ନିଜର ସର୍ବନାଶ କଲେ । ସେ ଯଦି ବନ୍ଦୀ କରିବାକୁ ଯାଇ ନ ଥାନ୍ତେ, ତେବେ ପାର୍ଲିଆମେଣ୍ଟର ସମସ୍ତ ସଦସ୍ୟ ଏକମତ ହୋଇ ପାରି ନ ଥାନ୍ତେ । ଏଥର ସମସ୍ତେ ଏକମତ ହୋଇ ରାଜାଙ୍କ ବିରୋଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ଏହି ଯୁଦ୍ଧକୁ “ମହାଗୃହଯୁଦ୍ଧ” କହନ୍ତି । ଏହା ୧୬୪୨ ଖ୍ରୀ ଅଃ ରେ ଆରବ୍ଧ ହେଲା ।

ମହାଗୃହଯୁଦ୍ଧରେ ଇଂଲଣ୍ଡ ଦୁଇ ଭାଗରେ ବିଭକ୍ତ ହେଲା । ଗୋଟିଏ ଗୃହରୁ ଦୁଏ ତ ପିତା ପୁତ୍ର ମଧ୍ୟରୁ କେହି ଜଣେ ରାଜାଙ୍କ ପକ୍ଷରେ ଏବଂ ଅନ୍ୟ ଜଣେ ପାର୍ଲିଆମେଣ୍ଟ ପକ୍ଷରେ ଯୋଗ ଦେଲେ । ଲୋକେ ଏପରି ଯୁଦ୍ଧକୁ ଭଲ ପାଆନ୍ତି କିପରି ? ଅଧିକାର ରକ୍ଷା କରିବା ନିମନ୍ତେ ଯୁଦ୍ଧ କରିବାକୁ ବାଧ୍ୟ ହେଲେ ।

କୌଣସି ଭଦ୍ରବ୍ୟକ୍ତି ଏହି ଯୁଦ୍ଧ ସମ୍ବନ୍ଧରେ ନିଜ ମତ ଖଣ୍ଡିଏ ଚିଠିରେ ପ୍ରକାଶ କରିଥିଲେ । “ଭଗବାନ୍ ! ମୋର ହୃଦୟର କଥା ଜାଣନ୍ତି; ମୋ ମନରେ ଏହି ଯୁଦ୍ଧ ବଡ଼ କଷ୍ଟ ଦେଉଛି । ଆମ୍ଭର ଶତ୍ରୁ କେହି ନାହିଁ, ଅଥଚ ଆମ୍ଭେ ଯୁଦ୍ଧ କରିବା—ଏପରି ଯୁଦ୍ଧକୁ ମୁଁ ଅନ୍ତରର ସହିତ ଘୃଣା କରେ । ଯାହାହେଉ, ଈଶ୍ୱର ଆମ୍ଭ ଉପରେ ଏହି ଯୁଦ୍ଧ କରିବାକୁ ଦେଇଛନ୍ତି । ଆମ୍ଭେ ନୀରବ ରହି ଯୁଦ୍ଧ କରିବାକୁ ବାଧ୍ୟ । ଆମ୍ଭେ ଦୁହେଁ ଯୁଦ୍ଧକ୍ଷେତ୍ରକୁ ଆସିଛୁଁ । ଏହି ଦୁଃଖର କ୍ଷେତ୍ରରେ ଆମ୍ଭଙ୍କୁ ଯେଉଁ କାର୍ଯ୍ୟ ଦିଆଯିବ, ତାହା ଆମ୍ଭେ କରିବାକୁ

ବାଧ । ବ୍ୟକ୍ତିଗତ ଶତ୍ରୁତା ଛାଡ଼ି ଆଉ ଏହି କାର୍ଯ୍ୟ ସମ୍ମାନ ସହିତ ସାଧନ କରିବା ।" ରାଜା ବିଶ୍ୱାସ କରୁଥିଲେ ଯେ, ସେ ଈଶ୍ୱରଙ୍କ ପ୍ରତିନିଧି; ସୁତରାଂ ତାଙ୍କର ଧର୍ମଗତ ଅଧିକାର ରକ୍ଷା କରିବା ନିମନ୍ତେ ଈଶ୍ୱର ତାଙ୍କୁ ସାହାଯ୍ୟ କରିବେ ।

ପାର୍ଲିଆମେଣ୍ଟର ସୈନ୍ୟ, ସଂଖ୍ୟାରେ ଅଧିକ ଥିଲେ । ରାଜାଙ୍କର ଅଶ୍ୱାରୋହୀ ସୈନ୍ୟ ଅଧିକ ଥିଲେ ସେମାନଙ୍କୁ କ୍ୟାଭେଲିୟାରସ୍ ବା ଅଶ୍ୱାରୋହୀ କୁହାଯାଉଥିଲା । ପାର୍ଲିଆମେଣ୍ଟ ପକ୍ଷରେ ପ୍ୟୁରିଟାନ୍ (ଧର୍ମମତାବଲମ୍ବୀ) ମାନେ ଥିଲେ । ସେମାନେ ମୁଣ୍ଡର ବାଳକୁ ଏପରି ଛୋଟ କରି କାଟୁଥିଲେ ଯେ ସେମାନଙ୍କର ମୁଣ୍ଡ ଗୋଲ ଦେଖା ଯାଉଥିଲା । ତେଣୁ ସେମାନଙ୍କୁ "ଗୋଲମୁଣ୍ଡୀ" (ରାଉଣ୍ଡହେଡ୍ସ) କୁହାଯାଉଥିଲା । ରାଜପକ୍ଷୀୟମାନଙ୍କର ଅନ୍ୟ ନାମ "ରାଜକୀୟ" ବା "ରୟେଲିଷ୍ଟସ୍" ମଧ୍ୟ ଥିଲା ।

ପାର୍ଲିଆମେଣ୍ଟ ପକ୍ଷ ପ୍ରଥମେ ହାରିଲେ; କିନ୍ତୁ ତହିଁ ୧୬୪୩ ଖ୍ରୀ: ଅ: ରେ ସ୍କଟ୍‌ମାନଙ୍କଠାରୁ ସାହାଯ୍ୟ ଆଣି ରାଜାଙ୍କ ସଙ୍ଗେ ଲଢ଼ିଲେ ।

ପାର୍ଲିଆମେଣ୍ଟ ପକ୍ଷର ନେତା କମ୍‌ୱେଲ୍ ଏତେବେଳେ ଯୁଦ୍ଧରେ ନେତା ହେଲେ ! ସେ ଚଳୁଥିବା ଯୁଦ୍ଧପ୍ରଣାଳୀକୁ ପସନ୍ଦ କଲେ ନାହିଁ । ସେ ସୈନ୍ୟବିଭାଗରେ ନୂତନ ସଂସ୍କାର ଆରମ୍ଭ କଲେ ଏବଂ ସୈନ୍ୟମାନଙ୍କୁ ନୂତନ ପ୍ରଣାଳୀରେ ଯୁଦ୍ଧ କରିବା ନିମନ୍ତେ ଶିକ୍ଷା ଦେଲେ । ତାହାଙ୍କର ନୂତନ ଶିକ୍ଷିତ ସୈନ୍ୟମାନଙ୍କୁ "ଲୌହପଞ୍ଜର" ନାମ ଦେଲେ । ଲୌହପଞ୍ଜର ସେନା ୧୬୪୫ ଖ୍ରୀ: ଅ: ରେ ଚାର୍ଲସଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ୧୬୪୬ ଖ୍ରୀ: ଅ: ରେ ଚାର୍ଲସ ଧୃତ ହୋଇ ବନ୍ଦୀ ହେଲେ । ତାଙ୍କର ଦୋଷର ବିଚାର ହେଲା । ସେଥି ସକାଶେ ହାଇକୋର୍ଟ-ଅବ୍-ଜଷ୍ଟିସ ବସିଲା । ଚାର୍ଲସ୍ କହିଲେ, "ପ୍ରଜା କେବେ ରାଜାର ବିଚାରପତି ହୋଇ ନ ପାରେ" ସେ କଥା ଶୁଣୁଛି କିଏ ?



କ୍ରମ୍‌ୱେଲ

ଏକ ସପ୍ତାହ ପର୍ଯ୍ୟନ୍ତ ବିଚାର ଚାଲିଲା । ବିଚାରରେ ଚାର୍ଲସ ଦେଶ-ଦ୍ରୋହୀ, ଅତ୍ୟାଚାରୀ ଓ ନରହନ୍ତା ବୋଲି ସାବ୍ୟସ୍ତ ହେଲେ । ୧୬୪୯ ଖ୍ରୀ: ଅ: ରେ ଲଣ୍ଡନ ରାଜପ୍ରାସାଦ ସମ୍ମୁଖରେ ତାହାଙ୍କର ଶିରଚ୍ଛେଦ କରାଗଲା । ଘାତକ ତାଙ୍କର ଛିନ୍ନ ମସ୍ତକ ହାତରେ ଟେକି ଲୋକଙ୍କୁ ଦେଖାଇଲା । କେତେ ଦୁଃଖରେ ଚିତ୍କାର କଲେ, ଲୋତକ ବର୍ଷଣ କଲେ । ଯେପରି ଚିତ୍କାର ପୂର୍ବେ ଆଉ କେବେ ଶୁଣାଯାଇ ନ ଥିଲା ।

## (୨୪)

## ସାଧାରଣ ତନ୍ତ୍ର

ଅଲିଭର କମ୍‌ଉଏଲ୍ ଜଣେ ଭଦ୍ରଘରର ସନ୍ତାନ ଥିଲେ । ସେ 'ମହାଗୃହଯୁଦ୍ଧ'ରେ ସେନାପତିରୂପେ ନିଜର ବିଶେଷ କ୍ଷମତା ଦେଖାଇଥିଲେ ଏବଂ ଯୁଦ୍ଧରେ ମୁଖପାତ୍ରର କାର୍ଯ୍ୟ କରିଥିଲେ । ତାଙ୍କର ଈଶ୍ୱର ମହାତ୍ମ୍ୟ ଥିଲା ଏବଂ ଧର୍ମନିଷ୍ଠା ଅତି ପ୍ରବଳ ଥିଲା । ଏଥି ସକାଶେ ସେ ଲୋକମାନଙ୍କର ସମ୍ମାନର ପାତ୍ର ହୋଇ ପାରିଥିଲେ । ସେତେବେଳକୁ ତାଙ୍କର ବୟସ କେବଳ ୪୦ ବର୍ଷ ହୋଇଥିଲା । ସେ ତେଜସ୍ୱିନୀ ଭାଷାରେ ବକ୍ତୃତା କରି ଲୋକମାନଙ୍କୁ ମତାଇ ପାରୁଥିଲେ । "ଦିନେ ସକାଳେ ଜଣେ ମଫସଲିଆ ଦର୍ଜିଦ୍ୱାରା ସିଲାଇ ହୋଇଥିବା ଈଷତ୍ ମଳିନ ସାଦା ପୋଷାକ ପିନ୍ଧିଥିବା ଜଣେ ଭଦ୍ରଲୋକଙ୍କ ବକ୍ତୃତା ଶୁଣିଲି । ତାଙ୍କ ବେଷ୍ଟନୀବନ୍ଧରେ (belt) ଗୋଟିଏ ଦୁଇଟା ରକ୍ତର ଦାଗ ଥିଲା । ତାଙ୍କ ହ୍ୟାଟରେ ବେଷ୍ଟନୀବନ୍ଧ ନ ଥିଲା । ତାଙ୍କ ପାର୍ଶ୍ୱରେ ଖଣ୍ଡା ବନ୍ଧା ଥିଲା । ତାଙ୍କ ମୂର୍ତ୍ତି ସୁଡ଼ୌଳ, ଚେହେରା ଆରକ୍ତ ଓ ଉତ୍‌ଫୁଲ୍ଲ । ସ୍ୱର ତୀବ୍ର ଓ କଟୁ ଏବଂ ବାଗ୍ମିତା ଓଜସ୍ୱିନୀ ଥିଲା ।" କମ୍‌ଉଏଲଙ୍କ ସମ୍ବନ୍ଧୀୟ ଏହି ବର୍ଣ୍ଣନାରୁ ତାଙ୍କର ଗୁଣ ଓ ସ୍ୱଭାବର କିଞ୍ଚିତ୍ ଆଭାସ ମିଳିବ ।

ରାଜାଙ୍କ ପ୍ରାଣଦଣ୍ଡ ପରେ କମ୍‌ଉଏଲ୍ ପାର୍ଲିଆମେଣ୍ଟଙ୍କ ସାହାଯ୍ୟରେ ଇଂଲଣ୍ଡରେ "ସାଧାରଣତନ୍ତ୍ର" ପ୍ରତିଷ୍ଠା କଲେ । ଏତେବେଳେ ପାର୍ଲିଆମେଣ୍ଟ ପ୍ରକୃତ ପାର୍ଲିଆମେଣ୍ଟ ନ ଥିଲା । ଅନେକେ ପାର୍ଲିଆମେଣ୍ଟ ତ୍ୟାଗ କରିଥିଲେ । କେତେକେ ଯୁଦ୍ଧରେ ନିହତ ହୋଇଥିଲେ । ପ୍ରାୟ ତିନି ଶହ ସଦସ୍ୟ ମଧ୍ୟରୁ କେବଳ ୯୦ଜଣ ସଦସ୍ୟ ଅବଶିଷ୍ଟ ଥିଲେ । ଏମାନେ ସମସ୍ତେ କମ୍‌ଉଏଲଙ୍କ ଇଙ୍ଗିତରେ

ଗୃହୁଥିଲେ । ବିପକ୍ଷ ପକ୍ଷରେ ଲୋକେ ପାର୍ଲିଆମେଣ୍ଟରେ ପଶିଯାଇ ପାରନ୍ତି ବୋଲି କମ୍‌ୱେଲ ନୂଆ ନିର୍ବାଚନ ମଧ୍ୟ କରାଇଲେ ନାହିଁ । ସେନାବଳରେ ସେ ବର୍ତ୍ତମାନ ରାଜ୍ୟ ଶାସନ କରିବାକୁ ଲାଗିଲେ । ତାଙ୍କର ଏହି ସାଧାରଣତନ୍ତ୍ର ଛଦ୍ମବେଶରେ ଗୋଟିଏ ଫୌଜିଶାସନ ଥିଲା ।

ଅୟର୍ଲଣ୍ଡ ଓ ସ୍କଟଲଣ୍ଡର ଲୋକେ ଇଂଲଣ୍ଡର ସାଧାରଣ ତନ୍ତ୍ରକୁ ମାନିଲେ ନାହିଁ ଏବଂ ପ୍ରଥମ ଚାର୍ଲସଙ୍କ ପୁତ୍ରଙ୍କୁ ଦ୍ୱିତୀୟ ଚାର୍ଲସ ରୂପେ ରାଜା ବୋଲି ଘୋଷଣା କଲେ । କମ୍‌ୱେଲ ଅୟର୍ଲଣ୍ଡକୁ ଯାଇ ଦେଶଟିକୁ ସାତମତ ଜୟ କଲେ । ସେ ୧୬୫୦ ଖ୍ରୀ: ଅ: ରେ ସ୍କଟ୍‌ମାନଙ୍କୁ ଯୁଦ୍ଧରେ ପରାସ୍ତ କଲେ । ୧୬୫୧ ଖ୍ରୀ: ଅ: ରେ ଦ୍ୱିତୀୟ ଚାର୍ଲସ ଫ୍ରାନ୍‌ସକୁ ପଳାୟନ କରି ସେଠାରେ ଲୁଚି ରହିଲେ । ଏହିପରି ଇଂଲଣ୍ଡ, ସ୍କଟ୍‌ଲଣ୍ଡ ଓ ଅୟର୍ଲଣ୍ଡ ସାଧାରଣ ତନ୍ତ୍ରର ଅଧୀନତା ସ୍ୱୀକାର କଲା ।

ସାଧାରଣତନ୍ତ୍ରର "ଅବଶିଷ୍ଟ" ପାର୍ଲିଆମେଣ୍ଟ ବର୍ତ୍ତମାନ ନିଜ ମଧ୍ୟରେ କଳିକଜିଆ ଆରମ୍ଭ କଲା । ଯୁଦ୍ଧ ଶେଷ ହେବାରୁ କମ୍‌ୱେଲ ଏବେ ଶାସନ ପ୍ରତି ଦୃଷ୍ଟି ଦେବାକୁ ଅବସର ପାଇଲେ । ଦିନେ ସେ ପାର୍ଲିଆମେଣ୍ଟର ଆଲୋଚନା ଶୁଣିବାକୁ ଗଲେ ଏବଂ ସଦସ୍ୟମାନଙ୍କର ଅନ୍ୟାୟ ଆଚରଣ, ସ୍ୱାର୍ଥପରତା ଓ ଦୀର୍ଘସୂତ୍ରିତା ଦେଖି ବିଶେଷ ତିରସ୍କାର କଲେ । ସେ ଶେଷରେ କହିଲେ, "ଦେଶର ମଙ୍ଗଳ ପାଇଁ କାର୍ଯ୍ୟ କରିବାକୁ ତୁମ୍ଭମାନଙ୍କର ହୃଦୟ ନାହିଁ ?" ସଦସ୍ୟମାନେ ପ୍ରତିବାଦ କରିବାରୁ କମ୍‌ୱେଲ କହିଲେ, "ଏ ପାର୍ଲିଆମେଣ୍ଟ ପାର୍ଲିଆମେଣ୍ଟ ନୁହେ । ମୁଁ ଏହାର ଶେଷ କରିବି !" ଏହା କହି ସେ ସୈନ୍ୟମାନଙ୍କ ସାହାଯ୍ୟରେ ସଦସ୍ୟମାନଙ୍କୁ ସଭାଗୃହରୁ ତଡ଼ିଦେଲେ ଏବଂ ସଭାଗୃହରେ ତାଲା ପକାଇ ବନ୍ଦ କରି ଦେଲେ । ଦେଶ ବର୍ତ୍ତମାନ ସେନାର କୃପାରେ ଚଳିଲା (୧୬୫୩)

କମ୍‌ୱେଲ୍ ନିଜେ ୧୪୦ ଜଣ ଧର୍ମପ୍ରାଣ ବ୍ୟକ୍ତିଙ୍କୁ ବାଛି ଗୋଟିଏ ନୂଆ ପାର୍ଲିଅମେଣ୍ଟ ଗଢ଼ିଲେ । ଏମାନେ ଅତି ଅକର୍ମଣ୍ୟ ଥିଲେ । ସେମାନଙ୍କୁ ପ୍ରବର୍ତ୍ତାଇ କମ୍‌ୱେଲ୍ ନିଜ ହସ୍ତକୁ ସମସ୍ତ କ୍ଷମତା ନେଇ ଆସିଲେ ଏବଂ ବିନା ପାର୍ଲିଅମେଣ୍ଟରେ ଶାସନକାର୍ଯ୍ୟ ଚଳାଇଲେ । ତାଙ୍କର କର୍ମଚାରୀମାନେ କାର୍ଯ୍ୟ ପରିଚାଳନା ସକାଶେ କେତେକ ନିୟମ ଗଢ଼ିଲେ । ଏହି ଅନୁସାରେ କମ୍‌ୱେଲ୍ ଦେଶର ରକ୍ଷକ (Protector) ହେଲେ । ତାଙ୍କୁ ପରାମର୍ଶ ଦେବାଲାଗି ଗୋଟିଏ କାଉନ୍‌ସିଲ୍-ଅବ୍-ଷ୍ଟେଟ୍ ରହିଲା । ଅର୍ଥାତ୍ ପ୍ରକୃତରେ କମ୍‌ୱେଲ୍ ରାଜାଙ୍କର ସମସ୍ତ କ୍ଷମତା ପାଇଲେ, କେବଳ 'ରାଜା' ନାମଟି ଗ୍ରହଣ କରି ନ ଥିଲେ ।

କମ୍‌ୱେଲ୍ ଏପରି କଠୋର ଓ ପ୍ରବୀଣ ଶାସକ ଥିଲେ ଯେ ଲୋକେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ସାହସ ସୁଦ୍ଧା କରୁ ନ ଥିଲେ ।

୧୬୫୮ ଖ୍ରୀ ଅ: ରେ କମ୍‌ୱେଲ୍ ମଲେ । ତାଙ୍କ ପରେ ତାଙ୍କ ପୁତ୍ର ରିଚାର୍ଡ କମ୍‌ୱେଲ ରକ୍ଷକ ହେଲେ । କିନ୍ତୁ ସେ ଶାସନକାର୍ଯ୍ୟ ଚଳାଇ ପାରିଲେ ନାହିଁ । ରିଚାର୍ଡ ଇସ୍ତଫା ଦେଲେ । ପ୍ରଜାମାନେ ହଲଣ୍ଡରୁ ଦ୍ୱିତୀୟ ଚାର୍ଲସଙ୍କୁ ଡକାଇ ଆଣି ସିଂହାସନ ପ୍ରତ୍ୟର୍ପଣ କଲେ । ଚାର୍ଲସଙ୍କ ଅଭିଷେକରେ ରାଜ୍ୟରେ ଆନନ୍ଦର ଢେଉ ଖେଳିଗଲା । ଲୋକେ ବୁଝିଲେ ଯେ ରାଜା ଅକର୍ମଣ୍ୟ ହେଲେ ସୁଦ୍ଧା ତାଙ୍କ ଅନୁପସ୍ଥିତିରେ ରାଜ୍ୟ ଚଳି ପାରେ ନାହିଁ ।

---

(୨୭)

୬୩

## ଦ୍ୱିତୀୟ ଚାର୍ଲସ

ଦ୍ୱିତୀୟ ଚାର୍ଲସ୍ ୧୬୬୦ ଖ୍ରୀ:ଅ:ରେ ସିଂହାସନରେ ବସିଲେ । ସେ ଯେଉଁ କେତୋଟି ବର୍ଷ ଇଂଲଣ୍ଡ ବାହାରେ ଥିଲେ, ସେହି



ଦ୍ୱିତୀୟ ଚାର୍ଲସ

ସମସ୍ତେ ଚତୁର୍ଦ୍ଦଶ ଲୁଇଙ୍କ ଦରବାରରେ କଟାଇଥିଲେ । ଫରାସୀ ରାଜଦରବାର ଆମୋଦ, ବ୍ୟସନ, ବିଳାସର ଲୀଳାଭୂମି ଥିଲା । ଚାର୍ଲସ୍ ଫରାସୀ ରାଜଦରବାରରୁ ସେ ସମସ୍ତ ଶିଖି ଆସିଥିଲେ । ଇଂଲଣ୍ଡ ରାଜଦରବାର ମଧ୍ୟ ଏହିପରି ଆମୋଦପ୍ରମୋଦର କେନ୍ଦ୍ର ହେଲା । ସେହି ଆମୋଦପ୍ରମୋଦକୁ ଇଂଲଣ୍ଡର ସାଧାରଣ ଲୋକେ ଆଦୌ ଭଲ ପାଉ ନ ଥିଲେ ଏବଂ ତହିଁର ତୀବ୍ର ସମାଲୋଚନା ଓ ନିନ୍ଦା କରୁଥିଲେ । ଚାର୍ଲସ୍ ସେ କଥାମାନ ହସି ଉଡ଼ାଇ ଦେଉ ନ ଥିଲେ ।

ରାଜା ହୋଇ ଚାର୍ଲସ୍ ପିତାଙ୍କର ଶିରଚ୍ଛେଦର ପ୍ରତିଶୋଧ ଗ୍ରହଣ କଲେ । ଯେଉଁମାନେ ପ୍ରଥମେ ଚାର୍ଲସଙ୍କୁ ଫାସି ଦେଇଥିଲେ, ସେମାନଙ୍କୁ କଠୋର ସଜା ଦେଲେ । ତେର ଜଣ ପ୍ରାଣଦଣ୍ଡ ପାଇଲେ । କେତେକ ଯାବଜ୍ଜୀବନ ବନ୍ଦୀ ହେଲେ । ଯେଉଁମାନେ ମରି ସାରିଥିଲେ, ସେମାନଙ୍କର ଅସ୍ଥି କବର ଭିତରୁ ବାହାର କରି ସେହି ଅସ୍ଥିକୁ ଫାସିକାଠରେ ଝୁଲାଇ ଦିଆଗଲା ।

ସାଧାରଣତନ୍ତ୍ରରେ ଯେଉଁ ସବୁ କାର୍ଯ୍ୟ ହୋଇଥିଲା, ଯାହା କିଛି ଆଇନ ଜାରି ହୋଇଥିଲା, ସେ ସମସ୍ତ ବେଆଇନ ବୋଲି ଘୋଷିତ ହେଲା । ସ୍କଟଲଣ୍ଡ ଓ ଆୟର୍ଲଣ୍ଡରେ ପୁଣି ନୂଆ ପାର୍ଲିଆମେଣ୍ଟ ବସାଇ ଦିଆଗଲା ।

୧୬୭୩ ଖ୍ରୀ:ଅ:ରେ ପାର୍ଲିଆମେଣ୍ଟ ଏକ ନୂତନ ଆଇନ ପ୍ରଣୟନ କଲା । ଏହାକୁ ଟେଷ୍ଟ-ଆକ୍ଟ (ପରୀକ୍ଷା ଆଇନ) କହନ୍ତି । ଏହି ଆଇନ ଅନୁସାରେ ଶାସନ ଓ ସେନାବିଭାଗର ପ୍ରତି କର୍ମଚାରୀଙ୍କୁ ଚାକିରି ପାଇଁ ଶପଥ କରିବାକୁ ହେଲା । ଇଂଲଣ୍ଡର ଚର୍ଚ୍ଚରେ ଯେଉଁମାନେ ବିଶ୍ୱାସ ଅଛି ବୋଲି ଶପଥ ଗ୍ରହଣ କଲେ ନାହିଁ, ସେମାନେ ଚାକିରି କରି ପାରିଲେ ନାହିଁ । ଯେଉଁମାନେ କ୍ୟାଥଲିକ୍ ଧର୍ମ ବା ଚରମପନ୍ଥୀ ପ୍ରୋଟେଷ୍ଟାଣ୍ଟ ( ପ୍ୟୁରିଟେନ୍ ) ଧର୍ମମତରେ ବିଶ୍ୱାସ କରୁଥିଲେ,

ସେମାନେ ଶାସନ ଓ ସେନାବିଭାଗରେ କାର୍ଯ୍ୟ କରି ପାରିଲେ ନାହିଁ ।

ଚାର୍ଲସଙ୍କର ପାଞ୍ଚ ଜଣ ମନ୍ତ୍ରୀ ଥିଲେ । ସେମାନଙ୍କ ନାମ କ୍ଲିଫୋର୍ଡ (ନାମର ପ୍ରଥମ ଅକ୍ଷର C), ଅର୍ଲିଙ୍ଗ୍‌ଟନ୍ (ନାମର ପ୍ରଥମ ଅକ୍ଷର A), ବକିଙ୍ଗ୍‌ହାମ୍ (ନାମର ପ୍ରଥମ ଅକ୍ଷର B), ଏଣ୍ଲି (ନାମର ପ୍ରଥମ ଅକ୍ଷର A), ଏବଂ ଲଡ଼ ରଡେଲ୍ ( ନାମର ପ୍ରଥମ ଅକ୍ଷର L) । ଏହି ପ୍ରଥମ ଅକ୍ଷରମାନ କେବଳ ଲେଖି ସେମାନେ ନିଜ ନିଜ ନାମ ସ୍ୱାକ୍ଷର କରୁଥିଲେ । ଏହି ପାଞ୍ଚ ଅକ୍ଷରକୁ ଗୋଟିଏ ସ୍ଥାନରେ ଲଗାଲଗି କରି ଲେଖିଲେ CABAL (କାବେଲ) ହେବ । ତେଣୁ ଏହି ମନ୍ତ୍ରୀପରିଷଦକୁ "କାବେଲ ମନ୍ତ୍ରୀମଣ୍ଡଳ" କହନ୍ତି । ଏହି ପାଞ୍ଚଜଣଯାକ ମନ୍ତ୍ରୀ ମିଳିମିଶି କାର୍ଯ୍ୟ କରୁ ନ ଥିଲେ । ଏମାନଙ୍କ ମଧ୍ୟରୁ କ୍ଲିଫୋର୍ଡ ଓ ଅର୍ଲିଙ୍ଗ୍‌ଟନ୍ କ୍ୟାଥଲିକ୍ ଧର୍ମାବଲମ୍ବୀ ଥିଲେ । ଲୋକେ କ୍ୟାଥଲିକ୍ ଧର୍ମାବଲମ୍ବୀ ଫ୍ରାନ୍ସ ରାଜାଙ୍କ ବିରୋଧୀ ଥିଲେହେଁ, ମନ୍ତ୍ରୀମାନଙ୍କ ଗୁପ୍ତ ପରାମର୍ଶରେ ଚାର୍ଲସ୍, ଫ୍ରାନ୍ସର ରାଜା ଲୁଇଙ୍କ ସଙ୍ଗେ ଗୋପନରେ ଏକ ସନ୍ଧି କରିଥିଲେ । ୧୬୭୩ ଖ୍ରୀ:ଅ:ରେ "ପରୀକ୍ଷା ଆଇନ" ଜାରି ହେବାରୁ କ୍ଲିଫୋର୍ଡ ଓ ଅର୍ଲିଙ୍ଗ୍‌ଟନ୍ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଏବଂ କାବେଲ୍ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା ।

ରାଜା କାହାରି ଉପରେ ଅସନ୍ତୁଷ୍ଟ ହେଲେ, ତାହାକୁ ଅକାରଣରେ ବହୁଦିନ ପର୍ଯ୍ୟନ୍ତ ଜେଲଖାନାରେ ବନ୍ଦୀକରି ରଖୁଥିଲେ । ବର୍ତ୍ତମାନ ପାର୍ଲିଆମେଣ୍ଟ ଏକ ନୂଆ ଆଇନ କଲା । ତାହାକୁ "ହେବିଅସ୍ କର୍ପସ୍ ଆକ୍ଟ ବା "ବ୍ୟକ୍ତି-ହାଜର କର ଆଇନ" କହନ୍ତି । ଏହି ଅନୁସାରେ ଜେଲର କର୍ମଚାରୀମାନେ କୌଣସି ଲୋକକୁ ଗିରଫଦାର କଲେ, ତାହାକୁ ଅବିଳମ୍ବେ ପରବର୍ତ୍ତୀ କଚେରି ଦିନ ବିଚାରପତିଙ୍କ ସମକ୍ଷରେ ହାଜର କରିବାକୁ ଏବଂ ତାହାର ଗିରଫଦାର ହେବାର

କାରଣ ବାଗ୍ମୁରପତିଙ୍କୁ ଜଣାଇବାକୁ ବାଧ୍ୟ ହେଲେ; ସୁତରାଂ ରାଜା ବିନା ଦୋଷରେ ଆଉ କାହାରିକୁ ଗିରଫଦାର କରି ଜେଲଖାନାରେ ବନ୍ଦ କରି ରଖି ପାରିଲେ ନାହିଁ ।

୧୬୬୫ ଖ୍ରୀ:ଅ: ରେ ଲଣ୍ଡନରେ ଏକ ଭୀଷଣ ପ୍ଲେଗ ରୋଗ ହେଲା । ସେଥିରେ ଏହି ସହରରୁ ଏକ ଲକ୍ଷ ଲୋକ ମରିଗଲେ ଏବଂ ଲଣ୍ଡନ ନିର୍ଜନ ପରି ହୋଇଗଲା । ଲୋକଙ୍କର ଗତାଗତ ବନ୍ଦ ହେବାରୁ ରାସ୍ତାମାନଙ୍କରେ ଘାସ ଉଠିଗଲା ।

୧୬୬୬ ଖ୍ରୀ:ଅ: ରେ ଲଣ୍ଡନରେ ଗୋଟିଏ ଭୟଙ୍କର ଘରପୋଡ଼ି ହେଲା । ଲଗାତ ତିନି ଦିନ ପର୍ଯ୍ୟନ୍ତ ଜଳିଲା । ତେର ହଜାର ଘର ଏବଂ



ପୁରାତନ ସେଣ୍ଟପଲ ଗିର୍ଜା

ନବେଟି ଗିର୍ଜାଘର ପୋଡ଼ି ଭସ୍ମ ହୋଇଗଲା । ଏଥିରେ କେତେ କ୍ଷତି ହୋଇ ନ ଥିବ ? କିନ୍ତୁ ଏଥିର ଗୋଟିଏ ଭଲ ଫଳ ମଧ୍ୟ

ହେଲା । ଏହା ପୂର୍ବରୁ ଘରଗୁଡ଼ିକ ଅତି ଅସ୍ୱାସ୍ଥ୍ୟକର ଭାବରେ ଲଗାଲଗି ହୋଇ ତିଆରିହୋଇଥିଲା । ଫଳରେ ରାସ୍ତାମାନ ଅତି ସଂକୀର୍ଣ୍ଣ



ନୂତନ ସେଣ୍ଟପଲ୍ ଗିର୍ଜା

ଥିଲା । ସେଗୁଡ଼ିକ ଆଉ ଥରେ ନିର୍ମାଣ କରିବାବେଳେ ସରକାର ସହରକୁ ସ୍ୱାସ୍ଥ୍ୟକର କରିବା ପାଇଁ ବ୍ୟବସ୍ଥା କଲେ । ରାସ୍ତାଗୁଡ଼ିକ ପ୍ରଶସ୍ତ କଲେ । ଘରଗୁଡ଼ିକ ପଥରରେ ସ୍ୱାସ୍ଥ୍ୟକର ଭାବରେ ନିର୍ମାଣ କଲେ । ସହରର ଜଳ ବାହାରିଯିବା ପାଇଁ ସୁବିଧା କଲେ । ତଦ୍ୱାରା ସହରର ସ୍ୱାସ୍ଥ୍ୟ ଭଲ ହେଲା । ସେଣ୍ଟପଲ୍ ଗିର୍ଜା ନିଆଁରେ ପୋଡ଼ି ଛାର ଖାର ହୋଇ ଯାଇଥିଲା । କ୍ରାଇଷ୍ଟୋଫର୍ ରେନ୍ ନାମରେ ଜଣେ ଶିଳ୍ପୀ ତାହାକୁ ପୂର୍ବଠାରୁ ଅନେକ ଭଲ୍ କରି ତିଆରି କରିଥିଲେ ।

ରାଜା ଚାର୍ଲସଙ୍କ ପୁଅ ନ ଥିଲେ । ତାଙ୍କ ପରେ ତାଙ୍କ ଭାଇ ଜେମସ୍ ରାଜା ହେବାର କଥା । ସେ କ୍ୟାଥଲିକ୍ ଧର୍ମାବଲମ୍ବୀ ଥିବାରୁ ତାଙ୍କୁ ରାଜା ନ କରିବା ନିମନ୍ତେ ପାର୍ଲିଆମେଣ୍ଟରେ ଦଳେ ଲୋକ ବାହାରିଲେ ଏବଂ ସେଥିସକାଶେ ଏକ ବିଲ୍ ଆଗତ କଲେ । ଏହି ଦଳକୁ "ହୁଇଗ୍" କହନ୍ତି । ରାଜା ଏହି ବିଲର ବିରୋଧୀ ଥିଲେ ଏବଂ ତାଙ୍କ ପକ୍ଷରେ ଆଉ ଦଳେ ସଦସ୍ୟ ରହିଥିଲେ । ଏହି ଦଳକୁ "ଟୋରି" କହନ୍ତି । "ହୁଇଗ୍" ଶବ୍ଦର ଅର୍ଥ ଖଟା-ଦୁଧ ବା ଘୋଳ-ଦହି ଏବଂ ଟୋରି ଶବ୍ଦର ଅର୍ଥ ଦସ୍ୟୁ । ଦୁଇ ଦଳ ପରସ୍ପରକୁ ଏପରି କହି ଗାଳି ଦେଉଥିଲେ । ପରବର୍ତ୍ତୀ କାଳରେ ଉଭୟ ଦଳ ଏହି ଦୁଇ ଶବ୍ଦର ମୂଳ ଅର୍ଥ ଭୁଲିଗଲେ ଏବଂ ନିଜକୁ ସେହି ନାମରେ ନାମିତ କରିବାରେ ଗର୍ବ ଅନୁଭବ କଲେ । ରାଜା ଟୋରି ପକ୍ଷରେ ଥିବାରୁ ବିଲ୍ ପାସ୍ ହୋଇ ପାରିଲା ନାହିଁ ।

ଚାର୍ଲସ୍ ୧୬୮୫ ଖ୍ରୀ: ଅ: ରେ ମଲେ । ଲୋକଙ୍କ ମନରେ ଚାର୍ଲସଙ୍କ ପ୍ରତି ଭଲ ଧାରଣା ନ ଥିଲା । ସେ କେବଳ ମଉଜ ମଜଲିସ୍ କରି ନିଜ ରାଜତ୍ୱ କଟାଇ ନେଲେ ଏବଂ କୌଣସି ଭଲ କାମ କରି ନ ଥିଲେ । ସେଥିପାଇଁ ଲୋକେ ତାଙ୍କ ସମ୍ବନ୍ଧରେ କହନ୍ତି :—

"He never said a foolish thing
And never did a wise one."

ଅର୍ଥାତ୍ "ସେ କେବେ ହାସ୍ୟାସ୍ପଦ କଥା କହି ନାହାନ୍ତି, କିମ୍ବା ଜ୍ଞାନୀ ପରି କାର୍ଯ୍ୟ କରି ନାହାନ୍ତି ।" ଏଥିର ଉତ୍ତରରେ ଚାର୍ଲସ୍ କହୁଥିଲେ, "ମୁଁ ଯାହା କହେ, ତାହା ମୋହର କଥା । ମୁଁ ଯାହା କରେ, ତାହା ମନ୍ତ୍ରୀମାନଙ୍କର କାର୍ଯ୍ୟ ।"

---

# (୨୭)

## ୮୮ ଦ୍ୱିତୀୟ ଜେମ୍‌ସ

ଜେମ୍‌ସ ଜଣେ ନୈଷ୍ଠିକ କ୍ୟାଥଲିକ୍ ଧର୍ମାବଲମ୍ବୀ ଥିଲେ ।
ଜଣେ କ୍ୟାଥଲିକ୍ ଇଂଲଣ୍ଡର ସିଂହାସନରେ ବସିବାରୁ ରାଜ୍ୟରେ



ଦ୍ୱିତୀୟ ଜେମସ୍

ଅଶାନ୍ତି ଦେଖାଗଲା । ସ୍କଟ୍‌ଲଣ୍ଡର ଦଳେ ଲୋକ ବିଦ୍ରୋହ କଲେ ।
ଇଂଲଣ୍ଡର ସିଂହାସନର ମନ୍‌ମାଉଥ୍ ନାମରେ ଜଣେ ହକ୍‌ଦାର
ବିଦ୍ରୋହ କଲେ । ମନ୍‌ମାଉଥ୍ ୧୬୮୫ ଖ୍ରୀ: ଅ: ରେ ସେଜ୍‌ମୁର୍ ଯୁଦ୍ଧରେ
ପରାସ୍ତ ହେଲେ ଏବଂ ଧୃତ ହୋଇ ପ୍ରାଣଦଣ୍ଡ ପାଇଲେ । ସେ ବଡ଼
କାତରଭାବରେ ପ୍ରାଣ ଭିକ୍ଷା କଲେ, କିନ୍ତୁ ଫଳ କିଛି ହେଲା ନାହିଁ ।

ଜଫ୍ରେ ନାମକ ବିଗ୍ଭରପତି ବୟୁସ୍କ, ସ୍ତ୍ରୀ ଓ ବାଳକ ପ୍ରଭୃତି ପ୍ରାୟ ତିନି ଶହ ଲୋକଙ୍କୁ ପ୍ରାଣଦଣ୍ଡ ଦେଲେ ଏବଂ ପ୍ରାୟ ଆଠ ଶହ ଲୋକଙ୍କୁ କ୍ରୀତଦାସ କାର୍ଯ୍ୟ କରିବା ନିମନ୍ତେ ପଶ୍ଚିମ-ଭାରତୀୟ ଦ୍ୱୀପପୁଞ୍ଜକୁ ନିର୍ବାସିତ କଲେ । ମନ୍‌ମାଉଥଙ୍କର ଜଣେ ପଳାତକ ସିପାହୀକୁ ଆଶ୍ରୟ ଦେଇଥିବାରୁ ଜଣେ ୭୦ ବର୍ଷର ବୁଢ଼ୀ ପ୍ରାଣଦଣ୍ଡ ପାଇଥିଲା । ଏପରି ନିଷ୍ଠୁର ଦଣ୍ଡବିଧାନ ସକାଶେ ଜଫ୍ରେଙ୍କ ଅଦାଲତ "ଶୋଣିତ ଅଦାଲତ" ନାମ ପାଇଥିଲା ।

ରାଜା ହୋଇ ଜେମ୍‌ସ ଯଥେଚ୍ଛାଚାର ଆରମ୍ଭ କଲେ । ସେ ପାର୍ଲିଆମେଣ୍ଟକୁ ପରୀକ୍ଷା ଆଇନ ଉଠାଇ ଦେବାକୁ କହିଲେ । ପାର୍ଲିଆମେଣ୍ଟ ସେ କଥା ଶୁଣିଲା ନାହିଁ । ତେଣୁ ସେ କହିଲେ, ତାଙ୍କର ବିଶେଷ କ୍ଷମତା ଅଛି । ସେହି କ୍ଷମତାବଳରେ ସେ କ୍ୟାଥଲିକ୍‌-ମାନଙ୍କୁ ଚାକିରି ଦେଲେ । ଯେଉଁମାନେ ପ୍ରତିବାଦ କଲେ, ସେମାନଙ୍କୁ ଦଣ୍ଡ ଦେଲେ । ୧୬୮୭ ଖ୍ରୀ: ଅ: ରେ ସେ ଗୋଟିଏ ଘୋଷଣା ଜାରି କଲେ ଯେ, କ୍ୟାଥଲିକ୍ ଓ ପ୍ୟୁରିଟେନ୍‌ମାନେ ସବୁ ଚାକିରି ପାଇ ପାରିବେ । ଏହି ଆବେଦନ ଗିର୍ଜାମାନଙ୍କରେ ପଢ଼ିଦେବା ନିମନ୍ତେ ଧର୍ମଯାଜକମାନଙ୍କୁ ହୁକୁମ କଲେ ।

କେଣ୍ଟାର୍‌ବେରିର ପ୍ରଧାନ ଧର୍ମଯାଜକ ଏବଂ ଆଉ ଛଅ ଜଣ ଧର୍ମଯାଜକ ତାହା ଗିର୍ଜାରେ ପଢ଼ିବା ନିମନ୍ତେ ଅସ୍ୱୀକାର କଲେ । ଜେମ୍‌ସ ସେମାନଙ୍କୁ ବନ୍ଦୀ କଲେ ଏବଂ ଆଦେଶ ଅମାନ୍ୟ ଅପରାଧର ବିଚାର ସକାଶେ ଅଦାଲତଠାକୁ ସେମାନଙ୍କୁ ପଠାଇ ଦେଲେ । ଅଦାଲତ ବିଚାରରେ ସେମାନଙ୍କୁ ଖଲାସ କରିଦେଲା ।

ପାର୍ଲିଆମେଣ୍ଟର ହୁଇଗ୍ ଓ ଟୋରି ଦୁଇ ପକ୍ଷ ରାଜାଙ୍କ ଅତ୍ୟାଚାର ଦେଖି ଏବେ ମିଳିଗଲେ । ସେମାନେ ରାଜାଙ୍କୁ ସିଂହାସନରୁ ତଡ଼ିଦେବେ ବୋଲି ସ୍ଥିର କଲେ । ସେମାନେ

ହଲଣ୍ଡରୁ ୱିଲିୟମ୍ ଓ ମେରୀଙ୍କୁ ସମ୍ମିଳିତ ନରପତି ହେବା ନିମନ୍ତେ ଇଂଲଣ୍ଡକୁ ଆହ୍ୱାନ କଲେ । ୱିଲିୟମ୍ ଇଂଲଣ୍ଡରେ ପହଞ୍ଚିବା ମାତ୍ରେ ଜେମ୍ସ ସିଂହାସନ ଛାଡ଼ି ଫ୍ରାନ୍ସକୁ ପଳାୟନ କଲେ (୧୬୮୮) ।

ପାର୍ଲିଆମେଣ୍ଟ ନିମ୍ନଲିଖିତ ସର୍ତ୍ତ ଦେଇ ଏବଂ ସେହି ସର୍ତ୍ତରେ ରାଜା ଓ ରାଣୀ ସମ୍ମତି ଦେଲାରୁ ସେମାନଙ୍କୁ ସିଂହାସନ ଦେଲା । ଏଥିରୁ ବୁଝା ପଡ଼ିଲା ଯେ ଇଂଲଣ୍ଡର ରାଜମୁକୁଟ ପୂର୍ଣ୍ଣ ଭାବରେ ପାର୍ଲିଆମେଣ୍ଟର ହାତକୁ ଆସିଥିଲା । ସେହି ସର୍ତ୍ତିମାନ :—

(୧) କେହି କ୍ୟାଥଲିକ୍ ଇଂଲଣ୍ଡର ରାଜା ହୋଇ ପାରିବେ ନାହିଁ ।

(୨) ରାଜା ପାର୍ଲିଆମେଣ୍ଟର ଅନୁମତି ବିନା କୌଣସି କର ବସାଇ ପାରିବେ ନାହିଁ ।

(୩) ରାଜା ଶାନ୍ତିବେଳେ ନିଜର ସୈନ୍ୟ ରଖିବେ ନାହିଁ ।

(୪) ପ୍ରଜାମାନେ ନିଜ ଇଚ୍ଛା ଅନୁସାରେ ପାର୍ଲିଆମେଣ୍ଟର ସଦସ୍ୟ ବାଛିବେ ଏବଂ ସଦସ୍ୟମାନେ ନିର୍ଭୟରେ ପାର୍ଲିଆମେଣ୍ଟରେ ଆପଣା ମତ ବ୍ୟକ୍ତ କରିବେ ।

(୫) ପ୍ରଜାମାନେ ରାଜାଙ୍କୁ ଯେ କୌଣସି ବିଷୟରେ ଦରଖାସ୍ତ କରି ପାରିବେ ।

(୬) ରାଜା ଦେଶର କୌଣସି ଆଇନକୁ ଅଟକ କରି ପାରିବେ ନାହିଁ ।

(୭) କୌଣସି ବହିର୍ଭୂତ ଆଇନରେ ନ ଥିବା ଦଣ୍ଡ ଦେଇ ପାରିବେ ନାହିଁ ।

---

(୬୭)

## ତୃତୀୟ ଉଇଲ୍‌ୟମ୍ ଓ ମେରୀ

ଉଇଲ୍‌ୟମ୍ ଓ ମେରୀ ପ୍ରଜାମାନଙ୍କର କଥା ମାନି ୧୬୮୮ ଖ୍ରୀ:ଅ: ରେ ଇଂଲଣ୍ଡର ସମ୍ମିଳିତ ଅଧିପତି ହେଲେ । ରାଜା ଓ ପ୍ରଜା ମଧ୍ୟରେ



ଉଇଲ୍‌ୟମ

ହୋଇଥିବା କଳହରେ ପ୍ରଜାମାନେ ଜିଣିଲେ । ରାଜା ନିଜର ପରାଜୟ ସ୍ୱୀକାର କଲେ । ସେ ବର୍ତ୍ତମାନ ପ୍ରଜାମାନଙ୍କର ହାତମୁଠାରେ ରହିଲେ । ଇଂଲଣ୍ଡର ସିଂହାସନ ପ୍ରଜାମାନଙ୍କର ସମ୍ପତ୍ତି ବୋଲି ଉଇଲ୍‌ୟମ୍ ଓ ମେରୀ ପରୋକ୍ଷରେ ସ୍ୱୀକାର କଲେ ।

ଆଗରୁ ପାର୍ଲିଆମେଣ୍ଟରେ ହୁଇଗ୍ ଓ ଟୋରି ଦୁଇଦଳ ହୋଇ ଥିବାର ତୁମ୍ଭେମାନେ ଜାଣିଅଛ । ହୁଇଗ୍‌ମାନେ ପାର୍ଲିଆମେଣ୍ଟରେ



ମେରି

ସଂଖ୍ୟାରେ ଅଧିକ ଥିଲେ । ଉଇଲିୟମ୍ ଫ୍ରାନ୍ସ ସଙ୍ଗେ ଯୁଦ୍ଧ କରିବାକୁ ଚାହୁଁଥିଲେ । ହୁଇଗ୍‌ମାନେ ଏହି ଯୁଦ୍ଧର ସପକ୍ଷରେ ଥିଲେ । ତେଣୁ ୱିଲିୟମ୍ ସଂଖ୍ୟା ଅଧିକ ହୁଇଗ୍ ଦଳରୁ ମନ୍ତ୍ରୀ ନିର୍ବାଚନ କଲେ । ଏଣିକି ଏହା କ୍ରମେ ଗୋଟିଏ ନିୟମରେ ପରିଣତ ହେଲା । ପାର୍ଲିଆମେଣ୍ଟରେ ଯେଉଁ ଦଳରୁ ଅଧିକ ସଦସ୍ୟ ରହିଲେ, ରାଜା ସେହି ଦଳରୁ ମନ୍ତ୍ରୀ ବାଛିବାକୁ ବାଧ୍ୟ ହେଲେ । ଏହିପରି ଗୋଟିଏ ଦଳରୁ ମନ୍ତ୍ରୀ ନିର୍ବାଚନ କରି ଶାସନ କରିବାକୁ ଦଳଗତଶାସନ ବା

(Party government) କହନ୍ତି । ଏଥିରେ ଦଳବିଶେଷରୁ ରାଜା କେତେଜଣ ମନ୍ତ୍ରୀ ବାଛି ଏକ ମନ୍ତ୍ରୀପରିଷଦ୍ ଗଠନ କରନ୍ତି । ଏହି ମନ୍ତ୍ରୀମଣ୍ଡଳକୁ କେବିନେଟ୍ (Cabinet) କହନ୍ତି । ମନ୍ତ୍ରୀମାନଙ୍କର ଶାସନକୁ ମନ୍ତ୍ରୀମଣ୍ଡଳ ଶାସନ (Cabinet system କହନ୍ତି ।

ଇଂଲଣ୍ଡରେ ଏପର୍ଯ୍ୟନ୍ତ କେତେକ ଲୋକ ଥିଲେ ଯେଉଁମାନେ ରାଜାଙ୍କୁ ଈଶ୍ୱରଙ୍କ ପ୍ରତିନିଧି ବୋଲି ବିଶ୍ୱାସ କରୁଥିଲେ । ସେମାନଙ୍କ ମତରେ ପ୍ରଜାମାନଙ୍କର ଦ୍ୱିତୀୟ ଜେମସଙ୍କୁ ତଡ଼ି ଓ୍ୱିଲିୟମ୍ ଓ ମେରୀଙ୍କୁ ମୁକୁଟ ଦେବା ଅଧିକାର ନ ଥିଲା । ଜେମସ୍ ଫ୍ରାନ୍ସକୁ ପଳାଇ ଯାଇ ଫ୍ରାନ୍ସ ରଜାଙ୍କର ସାହାଯ୍ୟ ଗ୍ରହଣ କଲେ । ଆୟର୍ଲଣ୍ଡର କ୍ୟାଥଲିକ୍‌ମାନେ ତାହାଙ୍କୁ ସାହାଯ୍ୟ କଲେ । 'ଜେମସ୍' ନାମଟିକୁ ଲାଟିନଭାଷାରେ 'ଜେକୋବସ୍' କହନ୍ତି । ଯେଉଁମାନେ ଜେକୋବସଙ୍କୁ ସାହାଯ୍ୟ କଲେ, ସେମାନଙ୍କୁ 'ଜେକୋବାଇଟ୍' କୁହାଗଲା ।

ଦ୍ୱିତୀୟ ଜେମ୍‌ସଙ୍କ ପୁତ୍ର ତୃତୀୟ ଜେମସ୍ ଏବଂ ନାତି ଚାର୍ଲସ୍ ଉଭୟେ ଇଂଲଣ୍ଡର ସିଂହାସନ ପାଇବା ସକାଶେ ଚେଷ୍ଟା କରିଥିଲେ । ତୃତୀୟ ଜେମ୍‌ସଙ୍କୁ "ଓଲ୍ଡ ପ୍ରିଟେଣ୍ଡାର" (ବୃଦ୍ଧ ପ୍ରତାରକ) ଏବଂ ଚାର୍ଲସଙ୍କୁ "ୟଙ୍ଗ୍ ପ୍ରିଟେଣ୍ଡାର" (ଯୁବ ପ୍ରତାରକ) କହନ୍ତି ।

ଆୟର୍ଲାଣ୍ଡ ଓ ସ୍କଟ୍‌ଲଣ୍ଡରେ ଜେକୋବାଇଟ୍‌ମାନେ ବିଦ୍ରୋହ କଲେ ଏବଂ ଓ୍ୱିଲିୟମଙ୍କୁ ରାଜା ବୋଲି ସ୍ୱୀକାର କଲେ । ଓ୍ୱିଲିୟମ୍ ଉଭୟ ସ୍ଥାନର ବିଦ୍ରୋହ ଦମନ କରିଥିଲେ ।

ଓ୍ୱିଲିୟମ୍ ହଲାଣ୍ଡ ଓ ଇଂଲଣ୍ଡ ଉଭୟ ଦେଶର ରାଜା ଥିଲେ । ଫ୍ରାନ୍ସର ରାଜା ଲୁଇ ହଲଣ୍ଡରୁ କେତେକ ଅଞ୍ଚଳ ନେଇଯିବା ସକାଶେ ଚେଷ୍ଟା କରୁଥିଲେ ଏବଂ ଇଂଲଣ୍ଡରେ ଜେମ୍‌ସଙ୍କୁ ରାଜା କରିବା ନିମନ୍ତେ ସାହାଯ୍ୟ ଦେଉଥିଲେ । ଏଥି ସକାଶେ ଓ୍ୱିଲିୟମ୍

ଫ୍ରାନ୍ସର ପୂର୍ବ ଶତ୍ରୁ ଥିଲେ । ସେ ପାର୍ଲିଆମେଣ୍ଟକୁ କହି ଫ୍ରାନ୍ସ ବିରୋଧରେ ଯୁଦ୍ଧ କରିବା ନିମନ୍ତେ ଟଙ୍କା ଓ ସୈନ୍ୟ ମଞ୍ଜୁର କରାଇଲେ ଏବଂ ଲୁଇଙ୍କ ସଙ୍ଗେ ଦୀର୍ଘକାଳ ଯୁଦ୍ଧ କଲେ । ୧୬୯୨ ଖ୍ରୀ:ଅ:ରେ ୱିଲିୟମ୍ ଫରାସୀ ଯୁଦ୍ଧ ଜାହାଜକୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ଲୁଇ ୧୬୯୭ ଖ୍ରୀ:ଅ:ରେ ସନ୍ଧି କଲେ ଏବଂ ୱିଲିୟମଙ୍କୁ ଇଂଲଣ୍ଡର ରାଜା ବୋଲି ସ୍ୱୀକାର କଲେ ।

ସ୍ପେନର ରାଜା ଚାର୍ଲସଙ୍କର ସନ୍ତାନ ନ ଥିଲେ । ତାଙ୍କର ଦୁଇ ଭଗିନୀଙ୍କ ମଧ୍ୟରୁ ଜଣେ ଫ୍ରାନ୍ସ ରାଜାଙ୍କୁ ଏବଂ ଅନ୍ୟ ଜଣେ ଅଷ୍ଟ୍ରିଆ ସମ୍ରାଟଙ୍କୁ ବିବାହ କରିଥିଲେ । ଚାର୍ଲସଙ୍କ ପରେ ଫ୍ରାନ୍ସ ବା ଅଷ୍ଟ୍ରିଆର ରାଜାଙ୍କର ସ୍ପେନ ପାଇବାର କଥା । ଏଥିରେ ଅଷ୍ଟ୍ରିଆ ବା ଫ୍ରାନ୍ସର କ୍ଷମତା ଅତ୍ୟନ୍ତ ବଢ଼ିଯିବ ବୋଲି ଇଉରୋପର ଅନ୍ୟ ରାଜାମାନେ ଭୟ କରୁଥିଲେ । ସେମାନେ ଏଥିରେ ବାଧା ଦେବା ପାଇଁ ଯୁଦ୍ଧ ଆରମ୍ଭ କଲେ । ଏହି ଯୁଦ୍ଧକୁ "ସ୍ପେନ୍ ଉତ୍ତରାଧିକାର ଯୁଦ୍ଧ" କହନ୍ତି । ଇଂରେଜମାନେ ଫରାସୀମାନଙ୍କ ବିରୋଧରେ ଯୁଦ୍ଧରେ ଯୋଗ ଦେଇଥିଲେ । ୧୭୦୨ ଖ୍ରୀ:ଅ:ରୁ ୧୭୧୩ ଖ୍ରୀ:ଅ:ପର୍ଯ୍ୟନ୍ତ ଯୁଦ୍ଧ ଚାଲିଥିଲା । ପୃଥିବୀର ଯେଉଁ ଯେଉଁଠାରେ ଫରାସୀ ଓ ଇଂରେଜମାନେ ରାଜ୍ୟ ବା ବାଣିଜ୍ୟକୋଠି ସ୍ଥାପନ କରିଥିଲେ, ସବୁଠାରେ ଏହି ଦୁଇଜାତି ଯୁଦ୍ଧ କରିଥିଲେ । ଶେଷରେ ଫରାସୀମାନେ ପରାସ୍ତ ହୋଇଥିଲେ ଏବଂ ସେମାନଙ୍କର କ୍ଷମତା ବୃଦ୍ଧି କରିବା ଆଶା ଶେଷ ହେଲା ।

୧୭୦୨ ଖ୍ରୀ: ଅ: ରେ ୱିଲିୟମ୍ ଅଶ୍ୱପୃଷ୍ଠରୁ ପଡ଼ିଯାଇ ପ୍ରାଣତ୍ୟାଗ କଲେ । ତାଙ୍କର ସନ୍ତାନ ନ ଥିଲେ; ତେଣୁ ତାଙ୍କ ପରେ ଏନ୍ ଇଂଲଣ୍ଡର ରାଣୀ ହେଲେ ।

---

(୨୮)

## ରାଣୀ ଏନ୍

ଏନ୍ ଖ୍ରୀ:ଅ:୧୭୦୨ ରେ ଇଂଲଣ୍ଡର ରାଣୀ ହେଲେ । ସ୍ପେନ ଉତ୍ତରାଧିକାର ଯୁଦ୍ଧରେ ସେ ମାର୍ଲବରୋ ସେନାପତି ନିଯୁକ୍ତ



ବ୍ଲେନ୍ ହ୍ଇମ୍ ଯୁଦ୍ଧ

କରିଥିଲେ । ମାର୍ଲବରୋ ଜଣେ ଅତି ସାହସୀ ଯୋଦ୍ଧା ଥିଲେ । ତାଙ୍କ ପରି ସେନାପତି ଖୁବ୍ ଅଳ୍ପ ଦେଖାଯାନ୍ତି । ୧୭୦୪ ଖ୍ରୀ: ଅ: ରେ ସେ ବ୍ଲେନ୍‌ହ୍ଇମ୍ ଯୁଦ୍ଧ ଜିଣିଥିଲେ ଏବଂ ପ୍ରାୟ ସମସ୍ତ ଯୁଦ୍ଧରେ ବିଜୟୀ ହୋଇଥିଲେ । ସେହି ବର୍ଷ ଇଂରେଜମାନେ ସ୍ପେନର ଜିବ୍ରାଲ୍‌ଟର୍ ଅଧିକାର କରିଥିଲେ । ସେହି ସମୟରୁ ଜିବ୍ରାଲ୍‌ଟର ଆଜିପର୍ଯ୍ୟନ୍ତ ଇଂରେଜ ମାନଙ୍କ ଅଧିକାରରେ ଅଛି । ଭାରତକୁ ଆସୁଥିବା ।ହାଜ

ସେହି ବାଟେ ଅଟେ । ଜିବ୍ରାଲ୍ଟର୍ ନ ଥିଲେ, ଇଂରେଜ ଜାହାଜର ଭାରତକୁ ଆସିବାରେ ବିଶେଷ ଅସୁବିଧା ହୁଅନ୍ତା । ପୁନଃପୁନଃ ପରାସ୍ତ ହୋଇ ଶେଷରେ ଫରାସୀ ରାଜା ସନ୍ଧି କଲେ (୧୭୧୩) । ଏହି ସନ୍ଧିକୁ ୟୁଟ୍ରେକ୍ଟ ସନ୍ଧି କହନ୍ତି । ଏହି ସନ୍ଧିରେ ଠିକ୍ ହେଲା ଯେ ଜଣେ ବ୍ୟକ୍ତି ସ୍ପେନ୍ ଓ ଫ୍ରାନ୍ସର ରାଜା ହୋଇ ପାରିବେ ନାହିଁ । ଫ୍ରାନ୍ସ ରାଜାଙ୍କ ନାତି ଫିଲିପ୍ ସ୍ପେନର ରାଜା ହେଲେ । ଲୁଇ ଯାହା ଫ୍ରାନ୍ସ ଓ ସ୍ପେନକୁ ଗୋଟିଏ ରାଜ୍ୟ କରିବେ ବୋଲି ବସିଥିଲେ, ତାଙ୍କର ସେହି ଚେଷ୍ଟା ବିଫଳ ହେଲା ।



ମାର୍ଲବରେ

୧୬୦୩ଖ୍ରୀ:ଅ:ରେ ସ୍କଟଲଣ୍ଡର ରାଜା ଷଷ୍ଠ ଜେମ୍ସ ଇଂଲଣ୍ଡର ରାଜା ହେଲେ ଏବଂ ଇଂଲଣ୍ଡର ପ୍ରଥମ ଜେମସ୍ ହୋଇଥିଲେ । ତାଙ୍କ ରା

ଇଂଲଣ୍ଡ ଓ ସ୍କଟ୍‌ଲଣ୍ଡର ଜଣେ ରାଜା ହୋଇଥିଲେ । ଦୁଇଟି ରାଜ୍ୟରେ ଜଣେ ରାଜା ଥିଲେ ମଧ୍ୟ ସେଥିରେ ଭିନ୍ନ ଭିନ୍ନ ପାର୍ଲିଆମେଣ୍ଟ, ଆଇନ ଓ ଧର୍ମ ପ୍ରଭୃତି ଥିଲା । ସ୍କଟ୍‌ଲଣ୍ଡ ଗୋଟିଏ ଗରିବ ଦେଶ ଏବଂ ଇଂଲଣ୍ଡ



ଏନ୍

ଗୋଟିଏ ଧନୀ ଦେଶ ଥିଲା । ଇଂରେଜମାନେ ଦେଶ ବିଦେଶରେ ବାଣିଜ୍ୟ କରି ବିଶେଷ ଧନ ଅର୍ଜନ କରୁଥିଲେ । ସ୍କଟ୍‌ଲଣ୍ଡ ସେହି

ବାଣିଜ୍ୟରୁ କୌଣସି ଉପକାର ପାଇ ପାରୁ ନ ଥିଲା । ସ୍କଟ୍‌ଲଣ୍ଡରୁ କୌଣସି ମାଲ ଇଂଲଣ୍ଡକୁ ଗଲେ ଇଂରେଜମାନେ ତା ଉପରେ ଚଢ଼ା ଦରରେ ଶୁଳ୍କ ବସାଉଥିଲେ । ଏଥିରେ ସ୍କଟ୍‌ମାନେ ଭାରି ଚିଡ଼ୁଥିଲେ । ସେମାନେ ଦେଖିଲେ ଇଂଲଣ୍ଡର ରାଜା ସ୍କଟ୍‌ଲଣ୍ଡର ରାଜା ହୋଇ ଥିଲେ ମଧ୍ୟ ସେମାନେ ତାହାଁରୁ କୌଣସି ଉପକାର ପାଉ ନାହାନ୍ତି । ଏନଙ୍କ ପୁତ୍ର କନ୍ୟା ନ ଥିଲେ । ତାଙ୍କ ସହିତ ସ୍କଟ୍ ରାଜବଂଶ ଶେଷ ହେବା କଥା ।

## ଷ୍ଟୁଆର୍ଟ ରାଜବଂଶ




ସ୍କଟ୍‌ଲଣ୍ଡର ପାର୍ଲିଆମେଣ୍ଟ ବର୍ତ୍ତମାନ ସ୍ଥିର କଲା, ଏନଙ୍କ ପରବର୍ତ୍ତୀ ଇଂଲଣ୍ଡର ରାଜାଙ୍କୁ ସ୍କଟ୍‌ମାନେ ରାଜାରୂପେ ଗ୍ରହଣ କରିବେ ନାହିଁ । ଏଥିରେ ଇଂରେଜମାନେ ଆଶଙ୍କାରେ ପଡ଼ିଲେ । ଇଂଲଣ୍ଡ ଓ ସ୍କଟ୍‌ଲଣ୍ଡ ମଧ୍ୟରେ ପୁଣି ଅଳ୍ପକାଳ ପରେ ଯୁଦ୍ଧ ଚାଲିବ । ତେଣୁ ସେମାନେ ଉଭୟ ଦେଶର ପାର୍ଲିଆମେଣ୍ଟକୁ ମିଶାଇ ଦେବାକୁ ଏବଂ ସ୍କଟ୍‌ଲଣ୍ଡକୁ ଇଂଲଣ୍ଡର ବାଣିଜ୍ୟ ବ୍ୟବସାୟରେ ଭାଗ ଦେବାକୁ

ଗ୍ରହିଁଲେ । ଇଂରେଜ ଓ ସ୍କଟ୍‌ମାନେ ମିଶିଯିବା ସକାଶେ ପରସ୍ପର ମଧ୍ୟରେ ପରାମର୍ଶ କଲେ । ୧୭୦୭ ଖ୍ରୀ:ଅ:ରେ ଆକ୍ଟ-ଅବ୍-ୟୁନିୟନ୍ (ମିଳନ ବ୍ୟବସ୍ଥା) ତିଆର ହୋଇ ପାସ୍ ହେଲା । ସ୍କଟ୍‌ଲଣ୍ଡର ପାର୍ଲିଆମେଣ୍ଟ ଭାଙ୍ଗିଗଲା । ସ୍କଟ୍‌ମାନେ ଇଂରେଜମାନଙ୍କ ପରି ଇଂଲଣ୍ଡର ପାର୍ଲିଆମେଣ୍ଟକୁ ସଦସ୍ୟ ପଠାଇଲେ । ଦୁଇ ଦେଶ ମିଳି ଗୋଟିଏ ଦେଶ ହେଲା । ସ୍କଟ୍‌ଲଣ୍ଡ ଓ ଇଂଲଣ୍ଡର ବାଣିଜ୍ୟ ବ୍ୟବସାୟରେ କିଛି ବାଧା ରହିଲା ନାହିଁ । ସ୍କଟ୍‌ମାନେ ଇଂରେଜମାନଙ୍କ ପରି ବାଣିଜ୍ୟ ବ୍ୟବସାୟରେ ସବୁ ପ୍ରକାର ସୁବିଧା ପାଇଲେ ।

୧୭୧୪ ଖ୍ରୀ:ଅ:ରେ ଏନ୍ ମଲେ ।

---

( ୨୯ )

## ସାମାଜିକ ଅବସ୍ଥାର ପୁନରାବୃତ୍ତି

ଏଲିଜାବେଥଙ୍କ ଅମଳରୁ ଇଂରେଜମାନେ ଉପନିବେଶ ସ୍ଥାପନ କରିବାର ଚେଷ୍ଟା କରିଥିଲେ । ଷ୍ଟୁଆର୍ଟମାନଙ୍କ ରାଜତ୍ୱରେ ଅନେକ ଗୁଡ଼ିଏ ଇଂରେଜ ଉପନିବେଶ ସ୍ଥାପିତ ହୋଇଥିଲା । ଇଷ୍ଟ-ଇଣ୍ଡିଆ-କମ୍ପାନି ଭାରତରେ ୧୬୧୨ ଖ୍ରୀ:ଅ:ରେ ସୁରଟ, ୧୬୩୯ ଖ୍ରୀ:ଅ:ରେ ମାନ୍ଦ୍ରାଜ, ୧୬୬୧ ଖ୍ରୀ:ଅ:ରେ ବୋମ୍ବେ ଏବଂ ୧୬୯୦ ଖ୍ରୀ:ଅ:ରେ କଲିକତାଠାରେ ବାଣିଜ୍ୟ କୋଠି ବା ଦୁର୍ଗମାନ ସ୍ଥାପନ କରିଥିଲେ । ଆମେରିକାରେ ଅନେକ ଗୁଡ଼ିଏ ଉପନିବେଶ ସ୍ଥାପିତ ହୋଇଥିଲା । ତନ୍ମଧ୍ୟରୁ ଭାରଜିନିଆ ଉପନିବେଶ ତମାଖୁ ଆମଦାନି ସକାଶେ ପ୍ରସିଦ୍ଧ ଥିଲା । ଏହି ଉପନିବେଶମାନଙ୍କରେ ତମାଖୁ, ଧାନ ଓ କପାତୁଳାର ଚାଷ ହେଉଥିଲା ।

ଯେଉଁମାନେ ଉପନିବେଶଗୁଡ଼ିକ ସ୍ଥାପନ କରିଥିଲେ, ସେମାନେ ସମସ୍ତେ ପ୍ରାୟ ବଡ଼ ବଡ଼ ଘରର ସନ୍ତାନ ଥିଲେ । ଅମେରିକାର ଗ୍ରୀଷ୍ମ-ମଣ୍ଡଳରେ ବାସ କରି ସେମାନେ ଖିଲକାମ କରିବାକୁ ଅନିଚ୍ଛୁକ ଥିଲେ; ତେଣୁ ସେମାନେ ଆଫ୍ରିକାର ନିଗ୍ରୋମାନଙ୍କୁ ବଳପୂର୍ବକ ଧରି ନେଉଥିଲେ ଏବଂ ସେମାନଙ୍କୁ କ୍ରୀତଦାସରୂପେ ରଖି ସେମାନଙ୍କ-ଦ୍ୱାରା ଖିଲକାମ କରାଉଥିଲେ । କେତେକେ ଏହି କ୍ରୀତଦାସଙ୍କୁ ବାଣିଜ୍ୟ କରି ବିଶେଷ ଲାଭବାନ୍ ହେଉଥିଲେ ।

ଅମେରିକାର ଲୋହିତ ଅଧିବାସୀମାନେ ଇଉରୋପର ଆଗନ୍ତୁକ-ମାନଙ୍କୁ ଘୃଣା କରୁଥିଲେ ଏବଂ ସେମାନଙ୍କୁ ଅମେରିକାର ବଳାତ୍କାରି ପ୍ରବେଶକାରୀ ଶତ୍ରୁ ବୋଲି ବିଚାର କରୁଥିଲେ । ସେମାନେ ଇଉରୋପୀୟ ଉପନିବେଶମାନ ଆକ୍ରମଣ କରୁଥିଲେ । ସେମାନଙ୍କ ଭୟରେ ଇଂରେଜମାନେ ତ୍ରସ୍ତ ହେଉଥିଲେ । ୧୬୮୪ ଖ୍ରୀ:ଅ:ରେ ପେନ୍ ନାମକ ଏକ ବ୍ୟକ୍ତି ଅମେରିକାର ଆଦିମ ଅଧିବାସୀମାନଙ୍କ ସଙ୍ଗେ ସନ୍ଧି କରି ସେମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କଲେ ଏବଂ କେହି ଅନ୍ୟଙ୍କୁ ଆକ୍ରମଣ କରିବେ ନାହିଁ ବୋଲି ଚୁକ୍ତି କଲେ ।

ଇଂଲଣ୍ଡରେ ଏତେବେଳେ ବାଣିଜ୍ୟ, ଶିଳ୍ପ, କୃଷି ବିଶେଷ ଉନ୍ନତ କରିଥିଲା । ଲୋକମାନେ ସେଥିରୁ ବିଶେଷ ଧନ ଉପାର୍ଜନ କରୁଥିଲେ । ଅନେକଗୁଡ଼ିଏ ବନ୍ଦର ଓ ଶିଳ୍ପକେନ୍ଦ୍ର ଧନର ଭଣ୍ଡାର ହୋଇଥିଲା । ଧନ ବଢ଼ିବା ସଙ୍ଗେ ଲୋକେ ବିଳାସରେ ଧନ ଖର୍ଚ୍ଚ କରିବାକୁ ମଧ୍ୟ ବାହାରିଲେ । ଚା, କଫି ପ୍ରଭୃତିର ବ୍ୟବହାର ଆରମ୍ଭ ହେଲା । କଫି, ଚାର ହୋଟେଲ ବସିଲା । ସେଠାରେ ନାନା ପ୍ରକାର ସମ୍ବାଦ ଓ ବିଷୟର ଆଲୋଚନା ମଧ୍ୟ ଚାଲିଲା ।

ନାଟକର ବହୁତ ଆଦର ହେଲା । ତହିଁରେ ସ୍ତ୍ରୀମାନେ ମଧ୍ୟ ଯୋଗ ଦେଲେ । ସ୍ତ୍ରୀଭୂମିକାରେ ନାରୀମାନେ ଅଭିନେତ୍ରୀରୂପେ




ମଫସଲର ପୁରୁଷ ଓ ସ୍ତ୍ରୀ

ବାହାରିଲେ । କୁସ୍ତି, ନାଚ, ଲକ୍ଷ୍ୟଭେଦ, ଯୁଦ୍ଧ ପ୍ରଭୃତି ବଢ଼ିଲା । ପୋଷାକ ପ୍ରଭୃତିରେ ବିଶେଷ ଆଡ଼ମ୍ବର ଦେଖାଗଲା । ଘରର ଉପକରଣର ସଂଖ୍ୟା ମଧ୍ୟ ବଢ଼ିଲା । ଦେଶର ଅନେକଗୁଡ଼ିଏ ପୁସ୍ତକ ଓ ସମ୍ବାଦପତ୍ରର ମୁଦ୍ରଣ ଓ ପ୍ରଚାର ହେଲା ।




ଭଦ୍ରଲୋକ ଓ ଭଦ୍ର ମହିଳା

ଧନୀମାନଙ୍କର ନିଜ ନିଜର ଯାନ ଥିଲା । ଗରିବମାନେ ଭଡ଼ାଗାଡ଼ି ବ୍ୟବହାର କରୁଥିଲେ । ଗାଡିମାନ ଦିନକୁ ପ୍ରାୟ ୫୦।୬୦ ମାଇଲ ଯାଉଥିଲା । ବାଟରେ ଗଣ୍ଡ ମଧ୍ୟ ଥିଲେ । ଏହି ସବୁ ଗାଡ଼ିରେ ଦେଶର ଚିଠିପତ୍ର ଡାକ ପ୍ରଭୃତି ଯିବା ଆସିବା କରୁଥିଲା । ହେଲେହେଁ ରାସ୍ତାଗୁଡ଼ିକ ଭଲ ନ ଥିଲା । ବାଟରେ କାଦୁଅରେ ଗାଡ଼ିର ଚକମାନ ବୁଡ଼ି ଯାଉଥିଲା । ନିକଟରେ ଥିବା ଗାଆଁରୁ ଭଲ ଭଲ ବଳଦ ଓ ଘୋଡ଼ା ଆଣି ଲୋକେ ବଡ଼ କଷ୍ଟରେ କାଦୁଅରୁ ଚକକୁ ଉଠାଉଥିଲେ ।




ଘୋଡ଼ା ଗାଡ଼ି

କୃଷକମାନେ ନିଜେ ଜମି ଚଷୁଥିଲେ । ସେମାନଙ୍କର ସ୍ତ୍ରୀଅମାନେ ବିଲକାମ କରୁଥିଲେ । ଗାଈ, ମେଣ୍ଢା ଘୁଷୁରିମାନଙ୍କ ସକାଶେ ଯଥେଷ୍ଟ ଚରଣ ଭୂମି ଥିଲା ।

ନଗରମାନଙ୍କରେ ବହୁତ ଲୋକ ରହୁଥିଲେ । ସେଥିରେ ରାସ୍ତାଗୁଡ଼ିକ ଅଣଓସାରିଆ ଓ କାଦୁଅପୂର୍ଣ୍ଣ ଥିଲା । ଲଣ୍ଡନର ଘରପୋଡ଼ି ପରେ ଏଥିର ଉନ୍ନତି କରାଯାଇଥିଲା ।

ବିଜ୍ଞାନ ଓ ସାହିତ୍ୟର ମଧ୍ୟ ଉନ୍ନତି ହୋଇଥିଲା । ନିଉଟନ ଜନ୍ମଗ୍ରହଣ କରି ବିଜ୍ଞାନରେ ଏକ ନବଯୁଗ ଆଣିଥିଲେ ।

## (୩୦)
## ପ୍ରଥମ ଜର୍ଜ

ପ୍ରଥମ ଜର୍ଜ ୧୭୧୪ ଖ୍ରୀ: ଅ: ରେ ହାନୋଭରରୁ ଆସି ଇଂଲଣ୍ଡର ରାଜା ହେଲେ । ସେତେବେଳକୁ ତାଙ୍କର ବୟସ ୫୨ ବର୍ଷ, ସେ ଦରବୁଢ଼ା ହୋଇଥିଲେ । ସେ ଇଂରାଜ ଭାଷା ଜାଣୁ ନ ଥିଲେ, କି ଇଂରାଜ ବୁଝି ପାରୁ ନ ଥିଲେ । ଲୋକେ କଣ କହୁଛନ୍ତି, କଣ ଶୁଣୁଛନ୍ତି, ସେ କିଛି ବୁଝି ପାରୁ ନ ଥିଲେ ।



ପ୍ରଥମ ଜର୍ଜ

ଏପର୍ଯ୍ୟନ୍ତ ରାଜା ନିଜେ ମନ୍ତ୍ରୀମଣ୍ଡଳର ସଭାରେ ବସି ରାଜ୍ୟର ସବୁ କଥା ବୁଝୁଥିଲେ, ମନ୍ତ୍ରୀମାନଙ୍କୁ ସବୁ ବିଷୟରେ ଆଦେଶ

ଉପଦେଶ ଦେଉଥିଲେ, ରାଜ୍ୟ ଚଳାଉଥିଲେ । ସେ ମନ୍ତ୍ରୀମଣ୍ଡଳର ମୁଖ୍ୟ ଥିଲେ ଓ, ଏକ ପ୍ରକାର ପ୍ରଧାନ ମନ୍ତ୍ରୀ ଥିଲେ ବୋଲି କହାଯାଇ ପାରେ ।

ପ୍ରଥମ ଜର୍ଜ ଇଂରାଜୀ ଭାଷା ବୁଝି ପାରୁ ନ ଥିଲେ । ମନ୍ତ୍ରୀମାନେ କଣ କହୁଛନ୍ତି ବା କରୁଛନ୍ତି, ସେ ବୁଝି ପାରୁ ନ ଥିଲେ । ଏଥିରେ ସେ ବିରକ୍ତ ହୋଇ ନିଜ କାର୍ଯ୍ୟକୁ ମନ୍ତ୍ରୀମାନଙ୍କ ମଧ୍ୟରୁ ଜଣକ ହାତରେ ଛାଡ଼ିଦେଲେ । ତାଙ୍କ ପୁଅ ଓ ପରବର୍ତ୍ତୀ ରାଜା ଦ୍ୱିତୀୟ ଜର୍ଜ ମଧ୍ୟ ପିତାଙ୍କ ପରି ଇଂରାଜୀ ଭାଷା ଜାଣୁ ନ ଥିଲେ । ସେ ମଧ୍ୟ ପିତାଙ୍କ ପରି ମନ୍ତ୍ରୀଙ୍କ ହାତରେ ସେହିପରି ନିଜ କାର୍ଯ୍ୟର ଭାର ଦେଲେ । କ୍ରମେ ଏହି ମନ୍ତ୍ରୀ ମନ୍ତ୍ରୀସଭାର ସଭାପତି ହେଲେ ଏବଂ ରାଜାଙ୍କ ସ୍ଥାନରେ ସେ ମନ୍ତ୍ରୀସଭାର ମୁଖ୍ୟ ହୋଇ ଶାସନକାର୍ଯ୍ୟ ଚଳାଇଲେ । ଏହାଙ୍କୁ କ୍ରମେ ପ୍ରଧାନମନ୍ତ୍ରୀ କୁହାଗଲା । ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜ ରାଜା ହେଲେ, କିନ୍ତୁ ଶାସନ କରି ପାରିଲେ ନାହିଁ । ତୃତୀୟ ଜର୍ଜ ମନ୍ତ୍ରୀସଭାର ମୁଖ୍ୟ ହେବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ରାଜା ଇଂରାଜୀ ଭାଷା ଜାଣୁ ନ ଥିବା ହେତୁ ଏହିପରି ତାଙ୍କର ଗୋଟିଏ ବିଶେଷ କ୍ଷମତା ହରାଇ ଥିଲେ ।

ସାର ରବର୍ଟ ୱାଲ୍‌ପୋଲ୍ ହୁଇଗ୍ ଦଳର ଜଣେ ପ୍ରଧାନ ନେତା ଥିଲେ । ସେ ଭଲରୂପେ ରାଜନୀତି ଜାଣୁ ନ ଥିଲେ । ସେ ୨୬ ବର୍ଷ ବୟସରେ ଲୋକପ୍ରତିନିଧି ରୂପେ ହାଉସ୍ ଅବ୍ କମନ୍‌ସକୁ ଗଲେ ଏବଂ ୧୭୦୨ରୁ ୧୭୪୨ ଖ୍ରୀ:ଅ: ପର୍ଯ୍ୟନ୍ତ ୪୦ ବର୍ଷ ତହିଁର ସଦସ୍ୟ ଥିଲେ । ଜର୍ଜ ମନ୍ତ୍ରୀମଣ୍ଡଳକୁ ଆସିବା ଛାଡ଼ିଦେବାରୁ ସେ ସେହି ସଭାର ପ୍ରଥମ ସଭାପତି ହୋଇଥିଲେ । ୧୭୨୧ରୁ ୧୭୪୨ ଖ୍ରୀ:ଅ: ପର୍ଯ୍ୟନ୍ତ ସେ ୨୧ ବର୍ଷକାଳ ମନ୍ତ୍ରୀସଭାର ସଭାପତିର କାର୍ଯ୍ୟ କରିଥିଲେ । କିନ୍ତୁ ୱାଲ୍‌ପୋଲ୍ ପ୍ରଧାନମନ୍ତ୍ରୀ ନାମ ଗ୍ରହଣ କରି ନ ଥିଲେ । ସେ

ମନେ କରୁଥିଲେ ଯେ ସେ ପ୍ରଧାନ ମନ୍ତ୍ରୀ ନାମ ଗ୍ରହଣ କଲେ, ଲୋକେ ସେଥିରେ ବିଦ୍ୱେଷ ଭାବ ପୋଷଣ କରିବେ । ସେ ଶାନ୍ତିକୁ ଭଲ ପାଉଥିଲେ । ଇଂଲଣ୍ଡ କାହାର କାହାର ସଙ୍ଗେ ଯୁଦ୍ଧରେ ମାତିବ ନାହିଁ, ସେଥିପାଇଁ ସେ ଚେଷ୍ଟା କରୁଥିଲେ । ତାହାଙ୍କର ଏହି କାର୍ଯ୍ୟ ହେତୁ ଦେଶରେ ଶାନ୍ତି ସ୍ଥାପିତ ହେଲା ଏବଂ ବାଣିଜ୍ୟ ଖୁବ୍ ବଢ଼ିଲା । ଲୋକମାନେ ବିଶେଷ ଧନ ଉପାର୍ଜନ କଲେ ।

ବୃଦ୍ଧ ପ୍ରତାରକ, ଜେମସ୍ ଏଡ୍‌ୱାର୍ଡ଼ ସ୍କଟଲଣ୍ଡର ପାର୍ବତ୍ୟ-ସେନା ସଂଗ୍ରହ କରି ୧୭୧୫ ଖ୍ରୀ:ଅ:ରେ ବିଦ୍ରୋହ ମତାଇଲେ । ଏହି ବିଦ୍ରୋହକୁ "ପନ୍ଦର ସାଲର ବିଦ୍ରୋହ" ( ୧୫ ସାଲର ବିଦ୍ରୋହ ) କହନ୍ତି । ବିଦ୍ରୋହୀମାନେ ପ୍ରେଷ୍ଟନ୍‌ଠାରେ ପରାସ୍ତ ହେଲେ । ଜେମ୍‌ସଙ୍କ ଦେହରେ ସେତେବେଳେ ଆଉ ଉତ୍ସାହ ନ ଥିଲା । ସେ ସୈନ୍ୟମାନଙ୍କୁ ଉତ୍ସାହ ଦେଇ ପାରୁ ନ ଥିଲେ । ପାର୍ବତ୍ୟ ଅଞ୍ଚଳର ସୈନ୍ୟମାନେ ତାଙ୍କୁ ପରିତ୍ୟାଗ କରି ପଳାଇଗଲେ । ବାଧ୍ୟ ହୋଇ ଜେମସ୍ ନିଜେ ଫ୍ରାନ୍‌ସକୁ ପଳାଇଲେ ।

୧୭୧୧ ଖ୍ରୀ.ଅ:ରେ ସାଉଥ୍-ସି-କମ୍ପାନୀ (ଦକ୍ଷିଣ ସମୁଦ୍ର ସଙ୍ଘ) ନାମରେ ଏକ ବାଣିଜ୍ୟସଙ୍ଘ ସ୍ଥାପିତ ହୋଇଥିଲା । ପ୍ରଥମେ ପ୍ରଥମେ ଦକ୍ଷିଣଆମେରିକାରେ ବାଣିଜ୍ୟ କରି ଏହି କମ୍ପାନି ବିଶେଷ ଲାଭ କରିଥିଲା । ଏହି କମ୍ପାନିର ଲାଭ ଦେଖି ଲୋକଙ୍କ ମନରେ ଭାରି ଲାଭର ଲୋଭ ହେଲା । ଲୋକେ ମୂଳ ଅଂଶମାନଙ୍କର ଦଶଗୁଣ ଦାମ ଦେଇ ଅଂଶମାନ କିଣିବାକୁ ଲାଗିଲେ । ଅନେକ ଠକ ନୂଆ ନୂଆ କମ୍ପାନି ଗଢ଼ିଲେ । ଲୋକେ ତହିଁରେ ମଧ୍ୟ ଅଂଶମାନ କିଣିଲେ, ପରେ ବୁଝି ପାରିଲେ ଯେ ସେମାନେ କପଟରି ଠକେଇଛନ୍ତି । ସାଉଥ୍-ସି-କମ୍ପାନୀ ଜଳବୁଦ୍‌ବୁଦ ପରି କେଉଁଆଡ଼େ ଉଡ଼ିଗଲା । ଲୋକେ ବିଶ୍ୱାସ କରି ଠକେଇଲେ । ସରକାର ସେ କଥା ଜାଣି ପାରିଲେ । ଏଣିକି

ଯେପରି ଲୋକେ ଆଉ ସେପରି ନ ଠକେଇବେ, ସେଥିପାଇଁ ବ୍ୟବସ୍ଥା କଲେ । ଏହାକୁ ଇଂଲଣ୍ଡର ଲୋକେ "ଦକ୍ଷିଣ ସମୁଦ୍ରର ବୁଦ୍‌ବୁଦ" କହନ୍ତି ।

---

## (୩୧)

## ଦ୍ୱିତୀୟ ଜର୍ଜ ୨୫

ଦ୍ୱିତୀୟ ଜର୍ଜ ୧୭୨୭ ଖ୍ରୀ:ଅ:ରେ ରାଜା ହେଲେ । ସେ ମନ୍ତ୍ରୀ ୱାଲ୍‌ପୋଲଙ୍କ ହାତରେ ରାଜ୍ୟର ସମସ୍ତ ଭାର ଛାଡ଼ିଦେଇ ହାନୋଭର୍ ପ୍ରସଙ୍ଗରେ ସବୁବେଳେ ବ୍ୟସ୍ତ ରହୁଥିଲେ ।



ଦ୍ୱିତୀୟ ଜର୍ଜ

ଅଷ୍ଟ୍ରିଅର ସମ୍ରାଟ୍ ଷଷ୍ଠ ଚାର୍ଲସଙ୍କ ପୁତ୍ର ନ ଥିଲେ । ତାଙ୍କ ପରେ-ତାଙ୍କ ଝିଅ ମେରିଆ ଥେରସା ଅଷ୍ଟ୍ରିଆର ସମ୍ରାଜ୍ଞୀ ହେବେ ବୋଲି ସେ ଇଉରୋପର ବଡ଼ ବଡ଼ ରାଜାମାନଙ୍କ ପାଖରୁ ଖଣ୍ଡିଏ ସ୍ୱୀକାର ପତ୍ର ଲେଖାଇ ନେଇଥିଲେ । ଏହାକୁ ପ୍ରେଗ୍ମେଟିକ୍ ସେକ୍ସନ୍ କହନ୍ତି । ଚାର୍ଲସ ମଲେ । ଫ୍ରାନ୍ସ, ସ୍ପେନ୍, ବେଭେରିଆ ଓ ପ୍ରାସା ସେହି ଚୁକ୍ତି ଭାଙ୍ଗିଲେ (୧୭୪୦) । ପ୍ରାସା ଅଷ୍ଟ୍ରିଆରୁ ସାଇଲେସିଆର ଗୋଟିଏ ଅଂଶ ନେଇଗଲା । ବେଭେରିଆ ବୁହେମିଆ କାଢ଼ି ନେବ ବୋଲି କହିଲା । ଫ୍ରାନ୍ସ ଓ ସ୍ପେନ୍ ବେଭେରିଆର ଦାବି ଠିକ୍ ବୋଲି କହିଲେ । ଇଂଲଣ୍ଡ ଓ ହଲଣ୍ଡ ଅଷ୍ଟ୍ରିଆ ସଙ୍ଗେ ମିଶିଗଲେ । ଯୁଦ୍ଧ ହେଲା । ଏହି ଯୁଦ୍ଧକୁ "ଅଷ୍ଟ୍ରିଆ ଉତ୍ତରାଧିକାର ଯୁଦ୍ଧ" କହନ୍ତି । ଦ୍ୱିତୀୟ ଜର୍ଜ ନିଜେ ଯୁଦ୍ଧକ୍ଷେତ୍ରରେ ଯୋଗ ଦେଲେ । ଏହାଙ୍କ ପରେ ଅନ୍ୟ କୌଣସି ଇଂରେଜ ରାଜା ଯୁଦ୍ଧକ୍ଷେତ୍ରକୁ ଯାଇ ଯୁଦ୍ଧ କରି ନାହାନ୍ତି । ଫରାସୀମାନେ ଡେଟିଞ୍ଜେନ୍ ଯୁଦ୍ଧରେ ପରାସ୍ତ ହେଲେ (୧୭୪୩) । ଫଣ୍ଟେନୟ ଯୁଦ୍ଧରେ ୧୭୪୫ ଖ୍ରୀ: ଅ: ରେ ଜର୍ଜଙ୍କ ପୁତ୍ର କମ୍ବରଲଣ୍ଡ ଫରାସୀମାନଙ୍କଦ୍ୱାରା ପରାସ୍ତ ହେଲେ । ୧୭୪୮ ଖ୍ରୀ: ଅ: ରେ ଆଚ୍ଲାସେପେଲ ସନ୍ଧିରେ ଏହି ଯୁଦ୍ଧ ଶେଷ ହେଲା । ମେରିଆଙ୍କୁ ଅଷ୍ଟ୍ରିଆର ସମ୍ରାଜ୍ଞୀ ବୋଲି ସମସ୍ତେ ସ୍ୱୀକାର କଲେ, କିନ୍ତୁ ପ୍ରାସା ସାଇଲେସିଆ ଛାଡ଼ିଲା ନାହିଁ ।

ଯୁବପ୍ରତାରକ ଚାର୍ଲସ ଏଡ୍‌ୱାର୍ଡ଼ ୧୭୪୫ ଖ୍ରୀ:ଅ:ରେ ବିଦ୍ରୋହ କଲେ ଏବଂ ସ୍କଟ୍‌ଲଣ୍ଡର ପାର୍ବତ୍ୟ ଅଞ୍ଚଳର ଲୋକମାନଙ୍କୁ ସଂଗ୍ରହ କରି ଇଂଲଣ୍ଡ ଆକ୍ରମଣ କଲେ । ସେ ପ୍ରେଷ୍ଟନ୍ ଯୁଦ୍ଧରେ ଇଂରେଜ ସୈନ୍ୟ-ମାନଙ୍କୁ ପରାସ୍ତ କରି ଲଣ୍ଡନ ଆଡ଼କୁ ଅଗ୍ରସର ହେଲେ । ୧୭୪୬ ଖ୍ରୀ:ଅ: ରେ କମ୍ବରଲଣ୍ଡ କଲୋଡେନ୍‌ମୁର ଯୁଦ୍ଧରେ ବିଦ୍ରୋହୀମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ବିଦ୍ରୋହ ବାଷ୍ପ ପରି ଉଭେଇଗଲା । ଚାର୍ଲସ ଛଦ୍ମବେଶରେ ସ୍କଟ୍‌ଲଣ୍ଡରୁ ପଳାଇଗଲେ । ହ୍ୱଦୟର ନୈରାଶ୍ୟ

ଭୁଲିଯିବେ ବୋଲି ସେ ଦିନରାତି ୨୪ ଘଣ୍ଟା ନିଶା ସେବନ କରିବାକୁ ଲାଗିଲେ । ୧୭୮୮ ଖ୍ରୀ: ଅ: ରେ ତାଙ୍କର ନୈରାଶ୍ୟପୂର୍ଣ୍ଣ ଜୀବନର ଶେଷ ଘଟିଲା । ଏହି ବିଦ୍ରୋହକୁ "ପଞ୍ଚାଳିଶ ବିଦ୍ରୋହ" (୪୫ ସାଲର ବିଦ୍ରୋହ ) କହନ୍ତି । ସ୍କଟଲଣ୍ଡର ପାର୍ବତ୍ୟ ଅଞ୍ଚଳର ଲୋକମାନେ ସର୍ବଦା ବିଦ୍ରୋହୀଙ୍କୁ ସାହାଯ୍ୟ କରୁଥିବା କଥା ଇଂରେଜମାନେ ବୁଝି ପାରିଲେ । ସେମାନଙ୍କୁ ଶିକ୍ଷିତ ଓ ଶାନ୍ତ କରିବା ସକାଶେ ବର୍ତ୍ତମାନ ସରକାର ବିଶେଷ ଯୋଗାଡ଼ କଲେ ।

ଫରାସୀ ଓ ଇଂରେଜମାନେ ଭାରତ ଓ ଆମେରିକା ଉଭୟ ସ୍ଥାନରେ ବାଣିଜ୍ୟ କରୁଥିଲେ । ଏଥି ସକାଶେ ସେମାନଙ୍କ ମଧ୍ୟରେ ବିଶେଷ ପ୍ରତିଯୋଗିତା ଚାଲିଥିଲା । ଏକ ଜାତି ଅନ୍ୟ ଜାତିକୁ କିପରି ସେହି ଦୁଇ ଦେଶରୁ ତଡ଼ିଦେବେ, ସେମାନେ ସର୍ବଦା ଚେଷ୍ଟା କରୁଥିଲେ । ଉତ୍ତର ଆମେରିକାର କାନାଡ଼ା ଓ ଲୁସିଆନାରେ ଫରାସୀମାନେ ନିଜ ନିଜ ଉପନିବେଶମାନଙ୍କରେ ଦୁର୍ଗଗୁଡ଼ିଏ ନିର୍ମାଣ କରି ଏକପାଖ ସତ୍ତ୍ୱ ଓ ଇଂରେଜମାନଙ୍କ ପକ୍ଷରେ ଅନୁପ୍ରବେଶ୍ୟ କରିବାର ଯୋଗାଡ଼ରେ ରହିଲେ । ଇଂରାଜମାନେ ସମୁଦ୍ର ମଧ୍ୟରେ ଆବଦ୍ଧ ରହିବେ ଏବଂ ଆଉ ପଶ୍ଚିମକୁ ଅଗ୍ରସର ହୋଇ ପାରିବେ ନାହିଁ, ତାହା ଏ ସବୁ ଦୁର୍ଗ ନିର୍ମାଣର ଉଦ୍ଦେଶ୍ୟ ଥିଲା । ଏହା ହୋଇଥିଲେ, ଇଂରେଜମାନଙ୍କର ଆଧୁନିକ ଯୁକ୍ତରାଜ୍ୟ ସ୍ଥାପନ ଅସମ୍ଭବ ହୋଇଥାନ୍ତା; ତେଣୁ ସେମାନେ ଫରାସୀମାନଙ୍କର ସେହି ଉଦ୍ଦେଶ୍ୟ ବିଫଳ କରିବାର ଚେଷ୍ଟା କଲେ ।

ଭାରତରେ ସେହିପରି ମଧ୍ୟ ଉଭୟ ଶକ୍ତି ରାଜ୍ୟ ସ୍ଥାପନର କଳ୍ପନା କରୁଥିଲେ । ସେମାନେ ଦେଶୀୟ ଶକ୍ତିମାନଙ୍କର ବିବାଦରେ ପଶି ପରସ୍ପର ମଧ୍ୟରେ ଯୁଦ୍ଧ କରିବାକୁ ଲାଗିଲେ । ବଙ୍ଗଳା ନବାବ ସିରାଜଉଦ୍ଦୌଲା ନିଜ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବାରୁ ପ୍ରଜାମାନେ ବିଦ୍ରୋହ କଲେ । ଇଂରେଜମାନେ ଗୋଟିଏ ପକ୍ଷ ନେଇ




୧୭୫୬ରେ ଉତ୍ତର ଆମେରିକା

ବଙ୍ଗଳାରେ ରାଜ୍ୟ ସ୍ଥାପନ କଲେ । କର୍ଣ୍ଣାଟ ସିଂହାସନ ସକାଶେ ଗୁନ୍ଦା ସାହେବ ଓ ମହମ୍ମଦ ଅଲି ଯୁଦ୍ଧ କଲେ । ଫରାସୀମାନେ ଏକ ପକ୍ଷ ଏବଂ ଇଂରେଜମାନେ ଅପର ପକ୍ଷ ନେଇ ଯୁଦ୍ଧ କଲେ । ହାଇଦ୍ରାବାଦର ନିଜାମପଦ ସକାଶେ ମଜଫରଜଙ୍ଗ ଓ ନାସିରଜଙ୍ଗ ଯୁଦ୍ଧ କଲେ । ଏଠାରେ ମଧ୍ଯ ସେମାନେ ଏକ ଏକ ପକ୍ଷ ନେଇ ଯୁଦ୍ଧ କଲେ ।

୧୭୫୬ ଖ୍ରୀ:ଅ: ରେ ଇଉରୋପ, ଆମେରିକା ଓ ଭାରତରେ "ସପ୍ତ-ବର୍ଷ ଯୁଦ୍ଧ" ହେଲା । ଗୋଟିଏ ପକ୍ଷରେ ଫ୍ରାନ୍ସ, ଅଷ୍ଟ୍ରିଆ, ସ୍ପେନ୍, ରୁଷ୍ ଓ ସେକସନି ଏବଂ ଅନ୍ୟ ପକ୍ଷରେ ଇଂଲଣ୍ଡ, ପ୍ରୁଷିଆ ଓ ହେନୋଭର ଯୁଦ୍ଧ କଲେ । ଇଂରେଜମାନେ ସର୍ବତ୍ର ହାରିଲେ । ସମସ୍ତେ ମନେ କଲେ, ଏ ଯାତ୍ରା ପ୍ରୁଷିଆର ସର୍ବନାଶ ହେବ, କିନ୍ତୁ ଫ୍ରେଡରିକ୍ ଅଦ୍ଭୁତ ଧୈର୍ଯ୍ୟ ଓ ରଣକୌଶଳ ସହ ଆତ୍ମରକ୍ଷା କଲେ ।

ଇଂରେଜମାନଙ୍କର ବିପଦ କହିଲେ ନ ସରେ । ଫରାସୀମାନେ ମାଇନର୍କା ଦ୍ୱୀପ ଅଧିକାର କଲେ । ନୌସେନାପତି ବାଇଙ୍ଗ ତାହା ସେମାନଙ୍କ ହାତରୁ ରକ୍ଷା କରି ନ ପାରିବାରୁ ଇଂରେଜ ସରକାର ତାଙ୍କୁ ଗୁଳି କରି ମାରିଦେଲେ । କମ୍ବରଲେଣ୍ଡ କ୍ଲଷ୍ଟର ଜେଭେନ-ଠାରେ ଫରାସୀମାନଙ୍କ ହାତରେ ଆତ୍ମସମର୍ପଣ କଲେ (୧୭୫୭) । ଫରାସୀମାନେ ହାନୋଭର୍ ଦଖଲ କରିନେଲେ । ଇଂଲଣ୍ଡଯାକ ବିଷାଦ ଓ ଅନ୍ଧକାର ଘୋଟି ହୋଇଗଲା ।

ଏତିକିବେଳେ ଉଇଲିୟମ୍ ପିଟ୍ ପ୍ରଧାନ ମନ୍ତ୍ରୀ ହେଲେ ଏବଂ ୧୭୫୭ ରୁ ୧୭୬୧ ଖ୍ରୀ ଅ: ପର୍ଯ୍ୟନ୍ତ ଚାରି ବର୍ଷ ସେହି କାର୍ଯ୍ୟ କଲେ । ସେ ବୁଝିଥିଲେ, ତାଙ୍କ ଛଡ଼ା କେହି ବ୍ରିଟିଶ ଜାତିର ଗୌରବ ରକ୍ଷା କରି ପାରିବ ନାହିଁ । ସେ ଜୋର ସୋରରେ ଯୁଦ୍ଧ ଚଳାଇଲେ । ଯାଙ୍ଗେ ସାଙ୍ଗେ ଅବସ୍ଥା ବଦଳିଗଲା । ତାଙ୍କ ଉତ୍ତେଜନା ଓ

ଉତ୍ସାହରେ ସମସ୍ତେ ମାତି ଉଠିଲେ । ସେ କହିଲେ, "ମୁଁ ରାଜାଙ୍କର ଚାକର ନୁହେଁ, ମୁଁ ରାଜ୍ୟର ଚାକର ।"

ପିଟ୍ ଭଲ ଭଲ ସେନାପତି ବାଛିଲେ । ଭାରତରେ ରବର୍ଟ କ୍ଲାଇଭ୍ ଓ ଆମେରିକାରେ ଜେନେରାଲ୍ ଉଲଫଙ୍କୁ ନିର୍ବାଚନ କଲେ । ଜର୍ମାନୀରେ ଫ୍ରେଡେରିକଙ୍କୁ ବହୁତ ଧନଜନ ଦେଇ ସାହାଯ୍ୟ କଲେ । ସେଠାରେ ଉଭୟଙ୍କର ଯୁଦ୍ଧ ଚାଲିବାରୁ ଫରାସୀମାନେ ଆଉ ଆମେରିକାକୁ ଧନଜନ ଦେଇ ସାହାଯ୍ୟ କରି ପାରିଲେ ନାହିଁ ।

ଚୀ



ଉଲ୍‌ଫ୍

ଫରାସୀମାନେ କାନାଡ଼ାର ଗୋଟିଏ ଅଂଶରେ ଉପନିବେଶ ସ୍ଥାପନ କରିଥିଲେ । ଏହି ଫରାସୀ କାନାଡ଼ାରେ କୁଏବେକ୍ ଓ ମଣ୍ଟ୍ରିଲ ସହର ପ୍ରସିଦ୍ଧ ଥିଲା । କୁଏବେକ୍ ଫରାସୀ କାନାଡ଼ାର ରାଜଧାନୀ ଥିଲା । ଏହା ଏକ ସରଳୋନ୍ନତ ପାହାଡ଼ର ଶିଖର-ଦେଶରେ ଥିଲା । ପାହାଡ଼ର ତଳ ପାଖରେ ଜଳ ଥିଲା । ଫରାସୀମାନେ ତାକୁ ଦୃଢ଼ ଭାବରେ ସୈନ୍ୟଦ୍ୱାରା ଜଗାଇଥିଲେ ଏବଂ ଶତ୍ରୁ ପଶି ପାରିବ ନାହିଁ ବୋଲି ମନେ କରୁଥିଲେ ।

ଏକ ଅନ୍ଧାର ରାତିରେ ଉଲଫ୍ ନୌକା ଯୋଗେ ଲରେନ୍ସ ନଦୀରେ ସହର ଉପରର ଏକ ସ୍ଥାନକୁ ସୈନ୍ୟମାନଙ୍କୁ ନେଇ-ଗଲେ । ସକାଳୁ କୁହୁଡ଼ି ହୋଇଥିଲା । ଫରାସୀମାନେ ଉଠି ଦେଖନ୍ତି ତ ଶତ୍ରୁମାନେ ସହରରେ ଉପସ୍ଥିତ । ଭୀଷଣ ଯୁଦ୍ଧ ହେଲା । ଉଲଫ୍ ନିହତ ହେଲେ । ଫରାସୀ ସେନାପତି ମଧ୍ୟ ନିହତ ହେଲେ । ଉଲଫ୍ ମରିବା ମୁହୂର୍ତ୍ତରେ ଶୁଣିଲେ କୁଏବେକ୍ ଇଂରେଜମାନଙ୍କର ହସ୍ତଗତ ହୋଇଅଛି । କୁଏବେକ୍ କାନାଡ଼ାର କଣ୍ଠସ୍ୱରୂପ ଥିଲା । କୁଏବେକ୍ ଅଧିକାର କରିବା ଅର୍ଥ କାନାଡ଼ା ଅଧିକାର କରିବା ।

ଇତିମଧ୍ୟରେ ଫ୍ରେଡ଼ରିକ୍ ଫରାସୀମାନଙ୍କୁ ଛିନ୍ନଛିନ୍ନ କରି ପକାଇଲେ । ସେ ସେମାନଙ୍କ ହାତରୁ ହେନୋଭର ରକ୍ଷା କଲେ । ଫରାସୀମାନେ ସର୍ବତ୍ର ପରାସ୍ତ ହେଲେ ।

ଭାରତରେ କ୍ଲାଇବ୍ ୧୭୫୭ ଖ୍ରୀ: ଅ: ରେ ବଙ୍ଗଳା ଅଧିକାର କଲେ । ୧୭୫୯ ଖ୍ରୀ: ଅ: ରେ ମସଲିପଟ୍ଟମ୍ ଯୁଦ୍ଧରେ ଏବଂ ୧୭୬୦ ଖ୍ରୀ: ଅ: ରେ ୱାଣ୍ଡିୱାସ୍ ଯୁଦ୍ଧରେ ଇଂରେଜମାନେ ଜୟୀ ହେଲେ । ୱାଣ୍ଡିୱାସ୍ ଯୁଦ୍ଧର ଫଳରେ ଦାକ୍ଷିଣାତ୍ୟରୁ ଫରାସୀ ପ୍ରାଧାନ୍ୟ ଲୋପ ପାଇଲା ।

ଫରାସୀମାନେ ପୁରଅଡ଼େ ପରାସ୍ତ ହୋଇ ନିଜ ଭାଗ୍ୟ ପରୀକ୍ଷାରେ ହତାଶ ହେଲେ । ୧୭୬୩ ଖ୍ରୀ: ଅ: ରେ "ପାରସନ୍ଧି" ସ୍ୱନ ସ୍ୱାକ୍ଷରିତ ହେଲା । ଇଂରେଜମାନେ କାନାଡ଼ା ଓ ଅନ୍ୟ କେତେକ ସ୍ଥାନ ପାଇଲେ । ପୂର୍ବ ଓ ପଶ୍ଚିମରେ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପିତ ହେଲା ।

---

## (୩୬)

## ତୃତୀୟ ଜର୍ଜ

ଦ୍ୱିତୀୟ ଜର୍ଜଙ୍କ ପୁଅ ଫ୍ରେଡ଼ରିକ୍ ଆଗରୁ ମରିଯାଇଥିବାରୁ, ଫ୍ରେଡ଼ରିକଙ୍କ ପୁଅ ତୃତୀୟ ଜର୍ଜ ୧୭୬୦ ଖ୍ରୀ: ଅ: ରେ ପିତାମହଙ୍କ ପରେ ସିଂହାସନରେ ବସିଲେ । ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜଙ୍କ



ତୃତୀୟ ଜର୍ଜ

ଅମଳରେ ମନ୍ତ୍ରୀମାନେ ରାଜାଙ୍କ ହାତରୁ ସମସ୍ତ କ୍ଷମତା ଛଡ଼ାଇ ନେଇ-ଥିଲେ; ତେଣୁ ତୃତୀୟ ଜର୍ଜ ଥରେ ଦୁଃଖ ପ୍ରକାଶ କରି କହିଥିଲେ, "ଇଂଲଣ୍ଡରେ ମନ୍ତ୍ରୀମାନେ ରାଜା ।" ତୃତୀୟ ଜର୍ଜ ଇଂଲଣ୍ଡର ଭାଷା, ଭାବ, ଆଗ୍ରହ ବ୍ୟବହାର ଉଣା ଅଧିକରେ ବୁଝୁଥିଲେ ଏବଂ ମନ୍ତ୍ରୀ-ସଭାରେ ଯୋଗ ଦେଇ ରାଜାଙ୍କ କ୍ଷମତା ପୁଣି ଫେରାଇ ଆଣିବାକୁ ଚେଷ୍ଟା କଲେ । କିନ୍ତୁ ସେଥିରେ ସେ ଅକ୍ଷମ ହେଲେ । ମନ୍ତ୍ରୀମଣ୍ଡଳରେ ପ୍ରଧାନ ମନ୍ତ୍ରୀଙ୍କ କ୍ଷମତା ଏତେ ଟାଣ ହୋଇ ଉଠିଥିଲା ଯେ, ସେ ଆଉ ପ୍ରଧାନ ମନ୍ତ୍ରୀଙ୍କ କ୍ଷମତା ତାଙ୍କ ହାତରୁ କାଢ଼ି ନେଇ ପାରିଲେ ନାହିଁ । ତେଣୁ ସେ ନିଜ ପକ୍ଷର ଲୋକଙ୍କୁ ମନ୍ତ୍ରୀ ନିର୍ବାଚନ କରିବାକୁ ଚେଷ୍ଟା କଲେ ଏବଂ ସେତିକିରେ ସନ୍ତୁଷ୍ଟ ରହିବାକୁ ବାଧ୍ୟ ହେଲେ । ମନ୍ତ୍ରୀ ନିର୍ବାଚନ କରିବା ବେଳେ ନିଜ ଦଳର ଲୋକ ରଖି ପାରିବେ ବୋଲି ସେ ସଦସ୍ୟ ନିର୍ବାଚନବେଳେ ଭୋଟଦାତାମାନଙ୍କୁ ନାନାପ୍ରକାର ଲୋଭ ଦେଖାଉଥିଲେ ।

ସପ୍ତବର୍ଷ ଯୁଦ୍ଧରେ ଆମେରିକାର ଉପନିବେଶମାନ ରକ୍ଷା କରିବା ସକାଶେ ଇଂଲଣ୍ଡର ବହୁତ ଟଙ୍କା ଖରଚ ହୋଇଥିଲା । ଏହି ଉପନିବେଶମାନ ରକ୍ଷା କରିବା ସକାଶେ ଇଂଲଣ୍ଡର ଏକ ସ୍ଥାୟୀ ସେନା ଆମେରିକାରେ ରହୁଥିଲେ । ଇଂଲଣ୍ଡର ଲୋକେ ମନେ କଲେ, ଏ ସମସ୍ତ ଖରଚରୁ କିଛି ଆମେରିକାବାସୀ ବହନ କରିବା ଉଚିତ ।

ଆମେରିକାବାସୀମାନେ ଉତ୍ପାଦନ କରୁଥିବା ତମାଖୁ, ତୁଳା ପ୍ରଭୃତି ବ୍ରିଟେନ୍ ଛଡ଼ା ଅନ୍ୟ ଦେଶକୁ ରପ୍ତାନି କରି ପାରୁ ନ ଥିଲେ । ବ୍ରିଟେନରେ ଯେଉଁ ସବୁ ଶିଳ୍ପ ଉତ୍ପନ୍ନ ହୁଏ, ଆମେରିକା-ବାସୀମାନଙ୍କୁ ସେ ସମସ୍ତ ନିଜ ଦେଶରେ ତିଆରି କରିବା ନିମନ୍ତେ ଅନୁମତି ଦିଆ ଯାଇ ନ ଥିଲା ଏବଂ ବ୍ରିଟେନର ଜିନିଷ କିଣିବା ସକାଶେ ବାଧ୍ୟ କରା ଯାଉଥିଲା ।

Amending

ଇଂଲଣ୍ଡର ପାର୍ଲିଅମେଣ୍ଟରେ ଅମେରିକାରୁ କେହି ପ୍ରତିନିଧି ନ ଥିଲେ । ଅଥଚ ଇଂଲଣ୍ଡର ପାର୍ଲିଅମେଣ୍ଟ ଅମେରିକା ସକାଶେ ଆଇନ ଗଢ଼ୁଥିଲେ । ଯେଉଁ ପାର୍ଲିଅମେଣ୍ଟରେ ସେମାନଙ୍କ ତରଫରୁ ପଦେ କହିବାକୁ କେହି ନାହାନ୍ତି, ସେହି ପାର୍ଲିଅମେଣ୍ଟର ଆଇନ କାନୁନ ସେମାନେ ମାନିବେ କାହିଁକି ? ବ୍ରିଟେନରେ ତିଆରି ହେଉଥିବା ଶିଳ୍ପ ଜିନିଷମାନ ଅମେରିକା ବାସୀଙ୍କୁ କାହିଁକି ତିଆରି କରିବା ନିମନ୍ତେ କ୍ଷମତା ଦିଆଯିବ ନାହିଁ ? ନିଜର ତମାଖୁ ଓ ତୁଳାରୁ ଯେପରି ଅଧିକ ମୂଲ୍ୟ ବାହାରିବ, ତାହା ସେମାନେ ସେପରି ଭାବରେ ବିକିବେ ନାହିଁ କାହିଁକି ?

ସପ୍ତବର୍ଷ ଯୁଦ୍ଧର ଖରଚ ଅମେରିକାଠାରୁ ଅଦାୟ କରିବା ସକାଶେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଗ୍ରେନ୍‌ଭିଲ୍ ଏକ ଷ୍ଟାମ୍ପ ଆଇନ ବାହାର କଲେ । ଏପର୍ଯ୍ୟନ୍ତ ଆମେରିକାବାସୀ କୌଣସି ନାଲିସ କଲେ, ସେଥିରେ ଷ୍ଟାମ୍ପ ଲଗୁ ନ ଥିଲା । ଏହି ନୂଆ ଆଇନ ଅନୁସାରେ ସେଥିପାଇଁ ଷ୍ଟାମ୍ପ ଦେବାକୁ ପଡ଼ିଲା । ପିଟ୍ ତ ଆଗରୁ ମନ୍ତ୍ରୀ ଥିଲେ । ସେ ଗ୍ରେନ୍‌ଭିଲଙ୍କ ଶତ୍ରୁ ଥିଲେ । ସେ କହିଲେ, "ଏହି ଆଇନ ଅତ୍ୟନ୍ତ ଅନ୍ୟାୟ ହୋଇଛି । ଆମେରିକାବାସୀ ଏଥିରେ ଆପତ୍ତି ନ କଲେ ମଧ୍ୟ, ସେମାନେ ଇଂଲଣ୍ଡର କ୍ରୀତ ଦାସଙ୍କର ସଙ୍ଗେ ସମାନ ହେବେ ।" ଆମେରିକାବାସୀ ବହୁତ ଆପତ୍ତି କଲେ । ସ୍ଥାନେ ସ୍ଥାନେ ଗୋଳମାଳ ଲାଗିଲା । ଶେଷରେ ଗ୍ରେନ୍‌ଭିଲ୍ ସେହି ଆଇନ ଉଠାଇ ଦେବା ନିମନ୍ତେ ବାଧ୍ୟ ହେଲେ ।

୧୭୬୭ ଖ୍ରୀ: ଅ: ରେ ଚା, କାଚଜିନିଷ, କାଗଜ, ରଙ୍ଗ ପ୍ରଭୃତି ଜିନିଷ ଉପରେ କର ବସିଲା । ପୁଣି ଗୋଳମାଳ ହେଲା, ଗ୍ରେନ୍‌ଭିଲ୍ ପୁଣି ଏହି କରମାନ ଉଠାଇ ଦେଲେ; କିନ୍ତୁ ଚା ଉପରେ ବସିଥିବା କର ଉଠାଇଲେ ନାହିଁ । ଅମେରିକାର ଲୋକେ ରାଗରେ ନିଆଁ ହୋଇ-

ଗଲେ । ୧୭୭୩ ଖ୍ରୀ: ଅ: ରେ କେତୋଟି ଜାହାଜ ଚା ନେଇ ବୋଷ୍ଟନ ବନ୍ଦରରେ ପହଞ୍ଚିଲା । କେତେକ ଯୁବକ ଛଦ୍ମବେଶରେ ଆସି ଜାହାଜ ଉପରୁ ଚା ଡବାତକ ନେଇ ପାଣିରେ ପକାଇ ଦେଲେ । ରାଗରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ବୋଷ୍ଟନ ବନ୍ଦରର ସବୁ କାରବାର ବନ୍ଦ କରିଦେଲେ । ଫଳରେ ଆମେରିକାବାସୀ ବିଦ୍ରୋହ କଲେ ।

ଶୁଣିଆଡ଼େ ସଭା ସମିତି ହେଲା । ଆମେରିକାର ନେତାମାନେ ଇଂରେଜ ପାର୍ଲିଆମେଣ୍ଟର ନିନ୍ଦା କରି ଲୋକଙ୍କୁ ମତାଇଲେ । ଫିଲାଡେଲ୍‌ଫିଆ ନାମକ ସ୍ଥାନରେ ସମସ୍ତ ଉପନିବେଶର ଲୋକେ ଜମା ହୋଇ ଏକ କଂଗ୍ରେସ ଗଠନ କଲେ । ଏହି କଂଗ୍ରେସ୍ ହିଁ ସମସ୍ତ ଆମେରିକା ପକ୍ଷରୁ ଯୁଦ୍ଧ ଚଳାଇଲା । ୧୭୭୫ ଖ୍ରୀ: ଅ: ରେ "ଆମେରିକାର ସ୍ୱାଧୀନତା ଯୁଦ୍ଧର" ଆରମ୍ଭ ହେଲା ।



ଜର୍ଜ ୱାସିଂଟନ୍

୧୭୭୬ ଖ୍ରୀ: ଅ: ରେ ସମସ୍ତ ଉପନିବେଶମାନଙ୍କୁ ଏକତ୍ର ମିଳାଇ ନେତାମାନେ ତାହାକୁ "ଯୁକ୍ତରାଜ୍ୟ" ନାମ ଦେଲେ ଏବଂ ଈଶ୍ୱରଙ୍କ ସାକ୍ଷୀ ଦେଇ ଯୁକ୍ତରାଜ୍ୟର ସ୍ୱାଧୀନତା ଘୋଷଣା କଲେ ।

ଜର୍ଜ ୱାଶିଙ୍ଗ୍‌ଟନ ବର୍ତ୍ତମାନ୍ ଆମେରିକାର ସେନାପତି ହେଲେ । ୧୭୭୮ ଖ୍ରୀ: ଅ: ରେ ବ୍ରିଟିଶସେନାପତି ଆତ୍ମସମର୍ପଣ କଲେ । ଫ୍ରାନ୍‌ସ, ସ୍ପେନ୍ ଓ ହଲଣ୍ଡ ଆମେରିକାକୁ ସାହାଯ୍ୟ କଲେ । ରୁଷ୍, ଡେନ୍‌ମାର୍କ ଓ ସୁଇଡେନ୍ ମଧ୍ୟ ଶେଷରେ ଯୁଦ୍ଧ କରିବେ ବୋଲି ଇଂଲଣ୍ଡ ବିରୋଧରେ ପ୍ରସ୍ତୁତ ରହିଲେ । ଏତେବେଳେ ଇଂରେଜମାନେ ଅବସ୍ଥାର ଗୁରୁତା ବୁଝିଲେ । ୧୭୮୧ ଖ୍ରୀ: ଅ: ରେ ଇଂରେଜ ସେନାପତି କର୍ଣ୍ଣୱାଲିସ୍ ଆତ୍ମସମର୍ପଣ କଲେ । ୱାଶିଙ୍ଗ୍‌ଟନ୍ ତାଙ୍କଠାରୁ ୟର୍କଟାଉନ୍ ଦଖଲ କଲେ ।

୧୭୮୩ ଖ୍ରୀ: ଅ: ରେ ଇଂରେଜମାନେ ବାଧ୍ୟ ହୋଇ "ଭର୍ସାଇ-ସନ୍ଧି" ସ୍ୱାକ୍ଷର କଲେ ଏବଂ ତଦ୍ଦ୍ୱାରା ଯୁକ୍ତରାଜ୍ୟର ସ୍ୱାଧୀନତା ସ୍ୱୀକାର କଲେ ।

୧୭୮୪ ଖ୍ରୀ: ଅ: ରେ ମନ୍ତ୍ରୀ ପିଟ୍ ଭାରତର ଶାସନ ସକାଶେ ଏକ ଆଇନ ପ୍ରଣୟନ କଲେ । ସେ ଦେଖିଲେ, ଇଷ୍ଟଇଣ୍ଡିଆ କମ୍ପାନି ବାଣିଜ୍ୟ କରୁ କରୁ ଭାରତରେ ରାଜ୍ୟ ଦଖଲ କରି ବସିଅଛନ୍ତି । ସେହି ରାଜ୍ୟର ଶାସନ ନିୟମାବଦ୍ଧ ହେବା ଉଚିତ । ସେଥି ସକାଶେ ସେ ଯେଉଁ ଆଇନ ପ୍ରଣୟନ କଲେ, ତାହାକୁ "ଇଣ୍ଡିଆ ଆକ୍ଟ" ବା "ଭାରତ ଆଇନ" କହନ୍ତି ।

ଆୟର୍ଲଣ୍ଡର ଅବସ୍ଥା ଏତେବେଳେ ନିତାନ୍ତ ଶୋଚନୀୟ ଥିଲା । କୃଷକମାନଙ୍କୁ ଏତେ କର ଦେବାକୁ ପଡୁଥିଲା ଯେ, ସେମାନେ ପେଟ ଭରି ମୁଠାଏ ଖାଇବାକୁ ପାଉ ନ ଥିଲେ । ଜମି ସବୁ ଇଂରେଜମାନଙ୍କ ହାତରେ ଥିଲା । ସେମାନେ ଅତ୍ୟଧିକ

ମାହାଘୂଲରେ ଆୟୁର୍ଲଣ୍ଡର ପ୍ରଜାମାନଙ୍କୁ ତାହା ବର୍ଷକ ଲାଗି ଠିକା ଦେଉଥିଲେ ।

ଆୟୁର୍ଲଣ୍ଡରେ ଗୋଟିଏ ପାର୍ଲିଆମେଣ୍ଟ ଥିଲା, କିନ୍ତୁ ଇଂରେଜ ପାର୍ଲିଆମେଣ୍ଟର ଅନୁମୋଦନ ନ ହେଲେ ସେହି ପାର୍ଲିଆମେଣ୍ଟ କୌଣସି ବାଧିବ୍ୟବସ୍ଥା କରି ପାରୁ ନ ଥିଲା । ଗ୍ରେଟେନ ପାର୍ଲିଆମେଣ୍ଟର ଜଣେ ବଡ଼ ନେତା ଥିଲେ । ସେ ବର୍ତ୍ତମାନ ଆୟୁର୍ଲଣ୍ଡର ପାର୍ଲିଆମେଣ୍ଟକୁ ସ୍ୱାଧୀନ କରିବା ନିମନ୍ତେ ଚେଷ୍ଟା କଲେ । ଆମେରିକାର ସ୍ୱାଧୀନତାଯୁଦ୍ଧରୁ ଇଂରେଜମାନେ ବହୁତ ଶିକ୍ଷି ଯାଇଥିଲେ । ଗ୍ରେଟେନଙ୍କ ଚେଷ୍ଟାରେ ସେମାନେ ଆୟୁର୍ଲଣ୍ଡର ପାର୍ଲିଆମେଣ୍ଟକୁ ସ୍ୱାଧୀନତା ଦାନ କଲେ; କିନ୍ତୁ ତଥାପି ଆୟୁର୍ଲଣ୍ଡବାସୀ ସେଥିରେ ସନ୍ତୁଷ୍ଟ ରହିଲେ ନାହିଁ । ପିଟ୍ ଦେଖିଲେ, ଦୁଇ ଦେଶର ପାର୍ଲିଆମେଣ୍ଟକୁ ମିଶାଇ ଗୋଟିଏ ଦେଶର ଗୋଟିଏ ପାର୍ଲିଆମେଣ୍ଟରେ ପରିଣତ ନ କଲେ, ପଛକୁ ଅବସ୍ଥା ବିଷମ ହେବ । ସେ ଆୟୁର୍ଲଣ୍ଡବାସୀମାନଙ୍କୁ ବୁଝାସୁଝା କରି ରାଜି କରାଇଲେ ଏବଂ ୧୮୦୦ ଖ୍ରୀଷ୍ଟାବ୍ଦରେ ଦୁଇ ପାର୍ଲିଆମେଣ୍ଟକୁ ମିଶାଇଦେଲେ । ଆୟୁର୍ଲଣ୍ଡର ପ୍ରତିନିଧିମାନେ ଯାଇ ଲଣ୍ଡନର ପାର୍ଲିଆମେଣ୍ଟରେ ସଦସ୍ୟ ହେଲେ । ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟୁର୍ଲଣ୍ଡର ଜାତୀୟ କ୍ରସ୍‌ପତାକା ମିଳି ଗ୍ରେଟବ୍ରିଟେନର ସମ୍ମିଳିତ ଜାତୀୟ ପତାକା ଗଠିତ ହେଲା । ସେଥି ସକାଶେ ତୁମ୍ଭେମାନେ ଇଂରେଜ ଜାତୀୟପତାକା "ୟୁନିୟନ୍ ଜାକ୍"ରେ ତିନୋଟି କ୍ରସ୍ (ଛକ) ଲଗାଲଗି ହୋଇ ରହିଥିବାର ଦେଖି ପାରୁଅଛ ।

---

# ଫରାସୀ ରାଷ୍ଟ୍ରବିପ୍ଳବ

ଫ୍ରାନ୍‌ସର ରାଜା ଯଥେଚ୍ଛାଚାର ଶାସନ କରୁଥିଲେ । ପ୍ରଥମ ଚାର୍ଲ୍‌ସ ୨୧ ବର୍ଷ ବିନା ପାର୍ଲିଆମେଣ୍ଟରେ ରାଜ୍ୟ ଶାସନ କରିଥିଲେ, କିନ୍ତୁ ଫରାସୀ ରାଜା ୧୬୧୪ରୁ ୧୭୮୯ ଖ୍ରୀ: ଅ: ପର୍ଯ୍ୟନ୍ତ ୧୭୫ ବର୍ଷ ଫ୍ରାନ୍‌ସର 'ଷ୍ଟେଟ୍‌ସ ଜେନେରେଲ୍' (ପାର୍ଲିଅମେଣ୍ଟ) ଡାକି ନ ଥିଲେ । ଯେଉଁଠାରେ ଅତ୍ୟାଚାର ଯେତେ ପ୍ରବଳ ହୁଏ, ସେଠାରେ ବିଦ୍ରୋହ ମଧ୍ୟ ସେତିକି ଝାଣ ହୁଏ । ଲୋକଙ୍କ ଜୀବନକୁ ନ ବାଧିବା ପର୍ଯ୍ୟନ୍ତ ସେମାନେ ଭୀଷଣଭାବରେ ବିଦ୍ରୋହ କରନ୍ତି ନାହିଁ । ଫ୍ରାନ୍‌ସର ଲୋକଙ୍କ ସେମାନଙ୍କ ଶୋଚନୀୟ ଅବସ୍ଥା ଓ ଦେଶରେ ହେଉଥିବା ଅତ୍ୟାଚାର ଅତିଶୟ କଷ୍ଟ ଦେଉଥିଲା । କୃଷକମାନେ ମାଲିକର କାମ କ୍ରୀତଦାସ ପରି କରୁଥିଲେ । ସରକାର ଲୁଣ ଉପରେ ଏତେ ଶୁଳ୍କ ବସାଇଥିଲେ ଯେ, ଲୋକେ ବିନା ଲୁଣରେ ଚଳିବାକୁ ଚାହୁଁଥିଲେ; ତଥାପି ସେମାନେ ରକ୍ଷା ପାଉ ନ ଥିଲେ । ସେମାନଙ୍କୁ ଲୁଣ କିଣିବା ନିମନ୍ତେ ବାଧ କରାଯାଉଥିଲା । ମାଛ ମାଂସ କଣ, ପ୍ରଜାମାନେ ଜୀବନରେ ଦେଖୁ ନ ଥିଲେ । ସେତେବେଳେ ସେମାନଙ୍କର ଅବସ୍ଥା ଏତେ ଶୋଚନୀୟ ଥିଲା ।

ପ୍ରଜାମାନଙ୍କଠାରୁ ଏପରି ବଳପୂର୍ବକ ପଇସା ନେଇ ରାଜା କେବଳ ବିଳାସରେ ଖରଚ କରୁଥିଲେ । ଦ୍ୱିତୀୟ ଚାର୍ଲ୍‌ସ୍ ଫରାସୀ ଦରବାରର ଆଡ଼ମ୍ବର ଦେଖି ତାହାଁର କିଛି ଅଂଶ ଇଂଲଣ୍ଡ ଦରବାରରେ ଚଳାଇଥିଲେ । ସେତିକି ସୁଦ୍ଧା ଇଂରେଜମାନେ ସହି ପାରି ନ ଥିଲେ । ଅଥଚ ଚାର୍ଲ୍‌ସଙ୍କ ଦରବାରରୁ ବହୁତ ଅଧିକ ଆଡ଼ମ୍ବର ଫରାସୀ ଦରବାରରେ ଚାଲିଥିଲା; କିନ୍ତୁ ଫରାସୀମାନେ ତାହା ନିତି ନିତି ଦେଖୁଥିଲେ । ଫ୍ରାନ୍‌ସର ଦରିଦ୍ର କୃଷକମାନେ ଏହି

ବିଳାସର ସମସ୍ତ ଖର୍ଚ୍ଚ ଯୋଗାଉଥିଲେ । ଧନୀ ବଡ଼ଲୋକମାନେ ସେଥିରୁ କିଛି ଅଂଶ ଦେଉ ନ ଥିଲେ,ବରଂ ତହିଁର ମୌଜମଜଲିସରୁ ଭାଗ ପାଉଥିଲେ ।

ବିଦେଶରୁ ଯେତେ ମାଲ ଆମଦାନି ହୁଏ ବା ବିଦେଶକୁ ଯେତେ ରପ୍ତାନି ହୁଏ, ସବୁଥିରେ ଦରିଦ୍ରମାନେ କର ବା ଶୁଳ୍କ ଦିଅନ୍ତି । ଏପରି କି ବଜାରର ପନିପରିବା ଉପରେ ମଧ୍ୟ ଶୁଳ୍କ ଛାଡ଼ ନ ଥିଲା । ଉଚ୍ଚ ଜାତିର ଲୋକେ ଦରିଦ୍ର ଶ୍ରେଣୀର ଲୋକଙ୍କୁ ପଶୁପକ୍ଷୀଠାରୁ ହୀନ ବୋଲି ବିଚାର କରୁଥିଲେ । ଏହି ଦରିଦ୍ର ଶ୍ରେଣୀ ଚିରକାଳ ଏ ସବୁ ଅତ୍ୟାଚାର ସହ୍ୟ କରି ଆସିଲା । ସେମାନଙ୍କ ମଧ୍ୟରେ ଶିକ୍ଷକ, ଓକିଲ, ଦୋକାନଦାର, ତଳ ଶ୍ରେଣୀର ପାଦ୍ରୀମାନେ ମଧ୍ୟ ଥିଲେ । ସେମାନେ କିଛି କିଛି ଶିକ୍ଷାର ଆଲୋକ ପାଇଥିଲେ ଏବଂ ଫଳରେ ନିଜର ଅଭାବ, ଅବ୍ୟବସ୍ଥା, ପ୍ରଭୃତି ବୁଝି ପାରୁଥିଲେ ।

ଆମେରିକାର ସ୍ୱାଧୀନତାଯୁଦ୍ଧ ଫରାସୀମାନଙ୍କର ଚକ୍ଷୁ ଫିଟାଇ ଦେଇଥିଲା । ସେମାନଙ୍କ ମଧ୍ୟରେ ନେତାର ଅଭାବ ନ ଥିଲା । ଏତେବେଳେ ବଡ଼ ବଡ଼ ଫରାସୀଲେଖକ ବାହାରି ଲୋକଙ୍କୁ ନୂଆ ନୂଆ ଭାବ ଶିକ୍ଷା ଦେଲେ । ସେମାନଙ୍କ ମଧ୍ୟରେ ରୁଷୋ ପ୍ରଧାନ ଥିଲେ । ରୁଷୋ ଲେଖିଲେ, "ମନୁଷ୍ୟ ଜନ୍ମିବାବେଳେ ସ୍ୱାଧୀନ, ମୁକ୍ତ ହୋଇ ସେ ଜନ୍ମେ, କିନ୍ତୁ ସମାଜ ତାହାର ହାତ ଗୋଡ଼ ବାନ୍ଧି ରଖେ । ପ୍ରଜାମାନେ ଦେଶର ପ୍ରକୃତ ମାଲିକ । ସେମାନେ ସହନ୍ତି ବୋଲି ରାଜା ସେମାନଙ୍କ ଉପରେ ପ୍ରଭୁ ହୋଇ ବସନ୍ତି ।" ଏହିପରି ଉତ୍ତେଜନାମୟୀ ଲେଖାମାନ ପଢ଼ି ଫରାସୀଜାତିର ମନ କ୍ରମେ ବଦଳିଗଲା ।

ଏତେ କର ବସାଇ ସୁଦ୍ଧା ରାଜା ଷୋଡ଼ଶ ଲୁଇ ଖରଚ ଚଳାଇ ପାରିଲେ ନାହିଁ । ଶେଷରେ ୧୭୮୯ ଖ୍ରୀ: ଅ: ରେ ସେ

ବାଧ୍ୟ ହୋଇ 'ଷ୍ଟେଟସ୍ ଜେନେରେଲ୍'କୁ ବସିବା ନିମନ୍ତେ ଡାକିଲେ । ସାଧାରଣ ଲୋକଙ୍କର ଅବସ୍ଥା ଏତେବେଳେ ବଦଳି ଯାଇଥିଲା । ଲୁଇ ଟଙ୍କା ପାଇବେ ବୋଲି ସଭା ଡାକିଲେ । ଲୋକେ ଟଙ୍କା ଦେବା କଥା ଛାଡ଼ି ରାଜ୍ୟର ସଂସ୍କାର କରିବେ ବୋଲି ଜିଦ୍ ଧରି ବସିଲେ । ବଡ଼ ଲୋକ, ପାଦ୍ରି ଓ ତୃତୀୟ ଶ୍ରେଣୀର ସାଧାରଣ ଲୋକଙ୍କୁ ଏକାଠି ବସିବା ଲାଗି ସେମାନେ ବାଧ୍ୟ କଲେ ଏବଂ ଏହି ନୂତନ ସଭାକୁ ସେମାନେ 'ଷ୍ଟେଟସ୍ ଜେନେରେଲ୍' ନ କହି "ଜାତୀୟ ମହାସଭା" (ନେଶନାଲ ଏସେମ୍ବ୍ଲି) ନାମ ଦେଲେ ।

ଜାତୀୟ ମହାସଭା ରାଜ୍ୟର ସମସ୍ତ ଅନ୍ୟାୟ କର ଉଠାଇ ଦେଲା, ମନୁଷ୍ୟ ମଧ୍ୟରେ କୌଣସି ଭେଦ ଭାବ ରହିଲା ନାହିଁ । କହିଲା —'ମନୁଷ୍ୟ ମାତ୍ରେ ସମାନ । ଜଣେ କାହାଁକି କିଛି କାମ ନ କରି, କିଛି କର ନ ଦେଇ ଆମୋଦ ବିଳାସରେ କାଳ କାଟିବ, ଆଉ ଜଣେ କାହିଁକି କାମ କରି କରି ଖାଲି କର ଦେଉଥିବ, ଅଥଚ ଖାଇବାକୁ ପାଇବ ନାହିଁ ? ଦେଶ ତମାମ ଆନନ୍ଦ, ଉତ୍ସାହ, ଉତ୍ତେଜନା ଖେଳିଗଲା ।

ରାଜା ସମ୍ମୁଖରେ ମହା ବିପଦ ଦେଖିଲେ । କଣ କରିବାକୁ ଯାଇ କଣ ଫଳିଲା ? ସେ ସୈନ୍ୟ ନେଇ ପ୍ରଜାମାନଙ୍କୁ ବାଧା ଦେଲେ । ପ୍ରଜା ଆଉ କି ମାନନ୍ତି ? ସେମାନେ ବନ୍ଦୀଗୃହ ପୋଡ଼ି ଦେଲେ । ସେମାନଙ୍କର ସ୍ୱାଧୀନତାରେ ବାଧା ଦେଉଥିବା ଲୋକଙ୍କୁ ବଧ କଲେ । ଶେଷରେ ରାଜାଙ୍କୁ ମଧ୍ୟ ବନ୍ଦୀ କଲେ ।

ରାଜା ବନ୍ଦୀଗୃହରୁ ମୁକୁଳିବାକୁ ଚେଷ୍ଟା କଲେ । ଅଷ୍ଟ୍ରିଆ ଓ ପ୍ରଷିଆ ତାହାଙ୍କୁ ସାହାଯ୍ୟ କରିବେ ବୋଲି ଘୋଷଣା କଲେ । ଏଥିରେ ପ୍ରଜାମାନେ ଅଧିକ ଚିଡ଼ିଗଲେ । ସେମାନେ ଫ୍ରାନ୍ସକୁ 'ସାଧାରଣତନ୍ତ୍ର' ବୋଲି ଘୋଷଣା କଲେ ( ୧୭୯୧ ) । ଲୁଇ

ଥିଗଲୁ ବନ୍ଦୀଘରେ ଥିଲେ, ସେ ଆଜ ଫ୍ରାନ୍ସର ରାଜା ହୋଇ ରହିଲେ ନାହିଁ ।

ଜାତୀୟ ମହାସଭା ଏଣିକି ଅନେକଗୁଡ଼ିଏ ଭଲ ଭଲ ସଂସ୍କାର ଦେଶରେ ପ୍ରଚଳନ କଲା । ତନ୍ମଧ୍ୟରୁ ଅନେକ ଗୁଡ଼ିଏ ଫ୍ରାନ୍ସରେ



ନେପୋଲିଅନ୍ ବୋନାପାର୍ଟ

ଆଜି ପର୍ଯ୍ୟନ୍ତ ରହିଅଛି । ପଛକୁ ଅଶିକ୍ଷିତ ଦୁର୍ଦ୍ଦାନ୍ତମାନେ ରାଜ୍ୟର କ୍ଷମତା ହସ୍ତଗତ କଲେ । ବିପ୍ଲବର ବିପକ୍ଷରେ ବୋଲି ଯାହାକୁ ଟିକିଏ ସନ୍ଦେହ କଲେ, ତାକୁ ଧରି ଅଣି ୨୪ ଘଣ୍ଟା ମଧ୍ୟରେ

ଫାସି ଦେବାକୁ ଲାଗିଲେ । ସେମାନେ ଶେଷରେ ଘୋଷଣା କଲେ- "ଯେଉଁ ରାଜ୍ୟର ପ୍ରଜାମାନେ ରାଜାଙ୍କୁ ତଡ଼ିଦେଇ ସାଧାରଣ, ତନ୍ତ୍ର ସ୍ଥାପନ କରିବେ ସେମାନଙ୍କୁ ଫ୍ରାନ୍ସ ସରକାର ସାହାଯ୍ୟ କରିବ ।" ଏହି ଘୋଷଣାରେ ୟୁରୋପର ରାଜାମାନେ ଆତଙ୍କିତ ହେଲେ ଏବଂ ଫରାସୀସରକାର ବିରୋଧରେ ଯୁଦ୍ଧ କରିବା ନିମନ୍ତେ ପ୍ରସ୍ତୁତ ହେଲେ । ଏହାର ଠିକ୍ ପରେ ବିପ୍ଳବୀମାନେ ଲୁଇ ଓ ତାଙ୍କ ସ୍ତ୍ରୀଙ୍କୁ ଫାସୀ ଦଣ୍ଡ ଦେଲେ ।

ୟୁରୋପର ସମସ୍ତ ଶକ୍ତି ମିଳିତ ହେଲେ ଏବଂ ଅଷ୍ଟ୍ରିଆ, ପ୍ରୁଷିଆ, ଇଂଲଣ୍ଡ, ହଲାଣ୍ଡ, ସ୍ପେନ, ସାର୍ଡିନିଆ ଏକ ସଙ୍ଗେ ଯୁଦ୍ଧ ଘୋଷଣା କଲେ । ଫରାସୀ ଜାତି ନିଜ ସ୍ୱାଧୀନତା ବଜାୟ ରଖିବ ବୋଲି ବସିଲା ଏବଂ ଗୋଟି ଗୋଟି କରି ସମସ୍ତଙ୍କୁ ପରାସ୍ତ କଲା । ସମସ୍ତେ ୧୭୯୮ ଖ୍ରୀଃ ଅଃ ମଧ୍ୟରେ ସନ୍ଧି କରିବାକୁ ବାଧ୍ୟ ହେଲେ ।

ନେପୋଲିୟନ ବୋନାପାର୍ଟ କର୍ସିକାରେ ଜନ୍ମିଥିଲେ । ସେ ପିଲା ଦିନେ ଗରିବ ଥିଲେ ଏବଂ ଫ୍ରାନ୍ସର ଗୋଟିଏ ବିଦ୍ୟାଳୟରେ ପଢୁଥିଲେ । ସେ ବିଦେଶୀ ଓ ଦରିଦ୍ର ଥିବାରୁ ପିଲାମାନେ ତାଙ୍କୁ ଘୃଣା କରୁଥିଲେ । ସେ ସେଠାରୁ ଗୋଟିଏ ଯୁଦ୍ଧ-ବିଦ୍ୟାଳୟକୁ ଯାଇ ଯୁଦ୍ଧବିଦ୍ୟା ଶିଖିଲେ । ତତ୍ପରେ ଜଣେ ସାମାନ୍ୟ ସୈନିକ ରୂପେ ଯୁଦ୍ଧ ବିଭାଗରେ କାର୍ଯ୍ୟ କଲେ । ୧୭୯୬ ଖ୍ରୀଃ ଅଃ ରେ ୨୭ ବର୍ଷ ବୟସରେ ଅଷ୍ଟ୍ରିଆକୁ ହରାଇବା ନିମନ୍ତେ ସେନାପତି ହେଲେ । ସେ ଏହି ଯୁଦ୍ଧରେ ଅଷ୍ଟ୍ରିଆକୁ ହରାଇ ବିଖ୍ୟାତ ନାମ କଲେ । ସେ ଏହାପରେ ମିଶର ଜୟ କଲେ ଏବଂ "ନୀଳନଦୀ ଯୁଦ୍ଧ"ରେ ଇଂରାଜ ସେନାପତି ନେଲସନଙ୍କ ପରାସ୍ତ କଲେ । ସେଠାରୁ ସେ ସିରିଆ ଓ ଭାରତ ଅଧିକାର କରି ପୂର୍ବ ଅଞ୍ଚଳରେ ଫରାସୀ ସାମ୍ରାଜ୍ୟ ସ୍ଥାପନ କରିବେ ବୋଲି କଳ୍ପନା କଲେ । ଏପରି ସମୟରେ ଫ୍ରାନ୍ସରେ ଗୋଳମାଳ

ହେଲା । ସେ ନିଜ ରାଜ୍ୟ ରକ୍ଷା କରିବା ନିମନ୍ତେ ମିଶରରୁ ଫ୍ରାନ୍‌ସକୁ ଫେରିଗଲେ (୧୭୯୯) । ଫ୍ରାନ୍‌ସର ଶାସନ ଦୁର୍ବଳ ହୋଇ ପଡ଼ିଲା । ସେ ବୁଦ୍ଧି ବଳରେ ତହିଁର ଭାର ନିଜ ହାତକୁ ଆଣିଲେ ଏବଂ 'କନ୍‌ସଲ୍' (ଶାସନକର୍ତ୍ତା) ରୂପେ ଫ୍ରାନ୍‌ସ ଶାସନ କଲେ, ଯେ ପ୍ରଜାମାନେ ତାଙ୍କୁ ରାଜାଠାରୁ ଅଧିକେ ମାନିଲେ ।



ଲର୍ଡ ନେଲ୍‌ସନ୍

ନେପୋଲିୟନ୍ ବର୍ତ୍ତମାନ ଇଂଲଣ୍ଡ ବିରୋଧରେ ଅସ୍ତ୍ର ଧାରଣ କଲେ ଏବଂ ତାହାର ବାଣିଜ୍ୟ ଧ୍ୱଂସ କରିବେ ବୋଲି ଲାଗିପଡ଼ିଲେ ।

ୟୁରୋପର ଯେତେ ରାଜ୍ୟ ଥିଲା, ସମସ୍ତଙ୍କୁ ଇଂରାଜଙ୍କ ଜିନିସମାନ ନ କିଣିବା ସକାଶେ ବାଧ୍ୟ କଲେ । ଇଂଲଣ୍ଡର ଲୋକେ ବିଦେଶକୁ ଶିଳ୍ପଜାତ ମାଲ୍ ପଠାଇ ବିଦେଶରୁ ଖାଦ୍ୟ ଦ୍ରବ୍ୟ ନ ଆଣିଲେ ଭୋକରେ ମରୁଥିଲେ । ସେମାନେ ଖାଦ୍ୟାଭାବରୁ ଯେପରି ମରିବେ ନେପୋଲିୟନ୍ ଠିକ୍ ସେପରି କଲେ । ଇଂଲଣ୍ଡ ବହୁତ ଚେଷ୍ଟା କଲା, କିନ୍ତୁ ନେପୋଲିୟନଙ୍କୁ ପାରିଲା ନାହିଁ । ଶେଷରେ ସନ୍ଧି କଲା । ନେପୋଲିୟନ୍ ଏହା ପରେ ନିଜକୁ ଫ୍ରାନ୍ସର ସମ୍ରାଟ୍ ବୋଲି ଘୋଷଣା କଲେ (୧୮୦୪) ।

ସମ୍ରାଟ୍ ପୁଣି ଇଂଲଣ୍ଡ ବିରୋଧରେ ଅସ୍ତ୍ର ଧାରଣ କଲେ । ସେ ସ୍ପେନ୍ ଜୟ କରି ସେଠାରେ ନିଜ ଭାଇଙ୍କୁ ରାଜା କଲେ । ୧୮୦୫ ଖ୍ରୀ: ଅ: ରେ ଟ୍ରାଫାଲ୍ ଗାରଠାରେ ଏକ ଜଳଯୁଦ୍ଧ ହେଲା । ସେଠାରେ ଇଂରାଜ ସେନାପତି ନେଲ୍‌ସନ୍ ଫ୍ରାନ୍ସ ଓ ସ୍ପେନର ଯୁଦ୍ଧ ଜାହାଜମାନଙ୍କୁ ଧ୍ୱଂସ କଲେ, ହେଲେହେଁ ଯୁଦ୍ଧରେ ନିଜେ ନିହତ ହେଲେ । ସେହି ବର୍ଷ ନେପୋଲିଅନ୍ ଅଷ୍ଟର୍ଲିଜ୍ ଯୁଦ୍ଧରେ ଅଷ୍ଟ୍ରିଆକୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ଅଷ୍ଟ୍ରିଆ ସନ୍ଧି କଲା । ୧୮୦୬ ଖ୍ରୀ: ଅ: ରେ ପ୍ରୁଷିଆ ପରାସ୍ତ ହେଲା । ନେପୋଲିୟନ୍ ତହିଁରେ ଥିବା ୩୦୦ ସାନ ସାନ ରାଜ୍ୟକୁ ଯୋଡ଼ି ୩୮ଟି ରାଜ୍ୟ କଲେ ଏବଂ ନିଜେ ତହିଁର ପ୍ରକୃତ ଶାସନକର୍ତ୍ତା ହେଲେ । ଅଷ୍ଟର୍ଲିଜ୍ ଯୁଦ୍ଧ କଥା ଶୁଣି ଇଂରାଜମନ୍ତ୍ରୀ ପିଟ୍ ନୈରାଶ୍ୟରେ ପ୍ରାଣ ବିସର୍ଜନ କଲେ ।

ନେପୋଲିୟନ୍ ବିଲାତି ଜିନିସ ବୟକଟ୍ କରିବା ନିମନ୍ତେ ସମସ୍ତଙ୍କୁ କହିଥିଲେ । ରୁଷ୍ ସେହି ଆଦେଶ ମାନି ନ ଥିଲା । ତେଣୁ ୧୮୧୨ ଖ୍ରୀ: ଅ: ରେ ସେ ମସ୍କୋ ଆକ୍ରମଣ କଲେ । ସେହି ଅଭିଯାନରୁ ଫେରିବାବେଳେ ବାଟରେ ଭୀଷଣ ତୁଷାର ପଡ଼ିଲା । ନେପୋଲିଅନଙ୍କ

ପାଞ୍ଚଅୟୁତ ସୈନ୍ୟ ମଧ୍ୟରୁ କେବଳ ପାଞ୍ଚ ହଜାର ଘରକୁ ଫେରିଲେ । ଏହାହିଁ ନେପୋଲିଅନଙ୍କ ପତନର ପ୍ରଧାନ କାରଣ ହେଲା ।

ଶତ୍ରୁମାନେ ବର୍ତ୍ତମାନ ସାହସ ପାଇ ପୁଣି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ପ୍ରୁସିଆ ଓ ସ୍ପେନ୍ ବିଦ୍ରୋହ କଲେ । ଇଂଲଣ୍ଡ, ଅଷ୍ଟ୍ରିୟା, ରୁଷ୍, ସୁଇଡେନ୍ ଯୁଦ୍ଧ ଘୋଷଣା କଲେ । ନେପୋଲିୟନ୍ ଲିପ୍‌ଜିଗ୍ ଯୁଦ୍ଧରେ ୧୮୧୩ଖ୍ରୀ: ଅ: ରେ ପରାସ୍ତ ହେଲେ । ସେ ଫ୍ରାନ୍ସର ସିଂହାସନ ଛାଡ଼ିଲେ । ଷୋଡ଼ଶ ଲୁଇଙ୍କ ବଂଶଧର ଅଷ୍ଟାଦଶ ଲୁଇ ପୁଣି ଫ୍ରାନ୍‌ସର ସିଂହାସନରେ ବସିଲେ । ନେପୋଲିୟନ୍ ଏଲ୍‌ବା ଦ୍ୱୀପକୁ ନିର୍ବାସିତ ହେଲେ ।

ଅଳ୍ପଦିନ ପରେ ନେପୋଲିଅନ୍ ଏଲ୍‌ବା ଦ୍ୱୀପରୁ ପଳାଇ ଆସି ପୁଣି ଫରାସୀ ସିଂହାସନ ହସ୍ତଗତ କଲେ । ତାଙ୍କୁ ଫେରି ପାଇ ଫରାସୀ ସେନା ଓ ପ୍ରଜାମାନଙ୍କ ମଧ୍ୟରେ ଅଦ୍ଭୁତ ଆନନ୍ଦ ଦେଖାଗଲା । ଲୁଇ ସିଂହାସନ ଛାଡ଼ି ପଳାଇଗଲେ ।

Wellington

୧୮୧୫ ଖ୍ରୀ: ଅ: ର 'ୱାଟର୍‌ଲୁ' ଯୁଦ୍ଧକ୍ଷେତ୍ରରେ ପୁଣି ଥରେ ତାଙ୍କର ଭାଗ୍ୟ ପରୀକ୍ଷା ହେଲା । ଏଥର ସେ ଅଦ୍ଭୁତ ବୀରତ୍ୱ ଓ ଯୁଦ୍ଧକୌଶଳ ଦେଖାଇଲେ । କିନ୍ତୁ ତାଙ୍କର ଭାଗ୍ୟ-ସୂର୍ଯ୍ୟ ବୁଡ଼ିବା ବେଳ ଆସି ହୋଇଥିଲା । ସେ ପରାସ୍ତ ହୋଇ ସେଣ୍ଟହେଲେନାକୁ ନିର୍ବାସିତ ହେଲେ । ଏହିଠାରେ ସେ ୧୮୨୧ ଖ୍ରୀ: ଅ: ରେ ପ୍ରାଣତ୍ୟାଗ କରିଥିଲେ ।

ୟୁରୋପର ରାଜାମାନେ ମିଶି ଭିଏନାଠାରେ ଏକ କଂଗ୍ରେସ୍ କଲେ ଏବଂ ସେହି କଂଗ୍ରେସରେ ରାଜ୍ୟମାନଙ୍କର ସୀମା ନିରୂପଣ କଲେ । ଇଂଲଣ୍ଡ ସେହି ରାଜ୍ୟ ବିଭାଗରେ ଅନେକଗୁଡ଼ିଏ ନୂତନ

ସାମୁଦ୍ରିକ ଅଞ୍ଚଳର ଅଧିକାର ପାଇଲା ଏବଂ ବାଣିଜ୍ୟ ବ୍ୟାପାର ବଢ଼ାଇବା ସକାଶେ ତାହାକୁ ଏଥର ବିଶେଷ ସୁବିଧା ମିଳିଲା ।

୬୦ ବର୍ଷ ରାଜତ୍ୱ କରି ତୃତୀୟ ଜର୍ଜ ୧୮୨୦ ଖ୍ରୀ:ଅ:ରେ ମଲେ ।

## (୩୩)

## ଶିଳ୍ପସମୃଦ୍ଧି

ଅଷ୍ଟାଦଶ ଶତାବ୍ଦୀରେ ଇଂରାଜମାନେ ଅନେକ ଉପନିବେଶ ସ୍ଥାପନ କରିଥିଲେ । ସେମାନେ ବାଣିଜ୍ୟ କରି ଭାରତରେ ରାଜ୍ୟ ଅଧିକାର ଆରମ୍ଭ କରିଥିଲେ । ପୃଥିବୀର ଚାରିଆଡ଼େ ଜାହାଜ ନେବା ଆଣିବାର ସୁବିଧା ସକାଶେ ଉପଯୁକ୍ତ ବନ୍ଦର ଓ ସ୍ଥାନମାନ ଅଧିକାର କରିଥିଲେ । ଏଥିରେ ବିଲାତରେ ଶିଳ୍ପର ମଧ୍ୟ ଉନ୍ନତି ହେଲା । ବ୍ୟବସାୟ ସକାଶେ ବ୍ରିଷ୍ଟଲ ପ୍ରଭୃତି ସହରର ବିଶେଷ ଉନ୍ନତି ହୋଇଥିଲା । ଲଣ୍ଡନ୍ ସହର ଅତି ସୁନ୍ଦର ରୂପେ ନିର୍ମିତ ହୋଇଥିଲା ଏବଂ କ୍ରମେ କ୍ରମେ ପୃଥିବୀ ମଧ୍ୟରେ ଏକ ଶ୍ରେଷ୍ଠ ସୁନ୍ଦର ସହରରେ ପରିଣତ ହେଲା ।

ଲୋକେ ସୁନ୍ଦର ସୁନ୍ଦର ପୋଷାକ ପିନ୍ଧିବା ଆରମ୍ଭ କଲେ । ବିଶେଷ କରି ବଣିକମାନଙ୍କର ପୋଷାକରେ ଆଡ଼ମ୍ବର ଦେଖାଗଲା । ଦେଶ ବିଦେଶର ବାଣିଜ୍ୟର ଖବର ନେବା ନିମନ୍ତେ ସେମାନେ କଫି ହୋଟେଲରେ ଜମା ହେଲେ । ସେଠାକୁ ନାନା ପ୍ରକାର ଲୋକ ଆସୁଥିଲେ, କଫି ଖାଉଥିଲେ, ଭିନ୍ନ ଭିନ୍ନ ସ୍ଥାନର ଖବର ଓ ରାଜନୀତି ଚର୍ଚ୍ଚା କରୁଥିଲେ, ସାପ୍ତାହିକ ଓ ଦୈନିକ ଖବରକାଗଜ-ମାନ ପଢ଼ୁଥିଲେ । ତେବେ ଖବର କାଗଜଗୁଡ଼ିକ ଆକାରରେ ଛୋଟ ଥିଲା, ଛପା ସୁନ୍ଦର ନ ଥିଲା ଏବଂ ଖର୍ଚ୍ଚ ଅଧିକ ପଡ଼ୁଥିଲା ।

ମଫସଲର କୃଷକ ମୂଲିଆମାନେ ଅଳ୍ପ ମଜୁରି ପାଉଥିଲେ । ସେମାନେ ଲେଖି ପଢ଼ି ଜାଣି ନ ଥିଲେ । ଗାଈ, ଘୁଷୁରି, କୁକୁଡ଼ା ପ୍ରଭୃତି ପୋଷୁଥିଲେ । ନିଜ ଜମିରେ ପନିପରିବା କରୁଥିଲେ । ସେମାନଙ୍କ ସ୍ତ୍ରୀ ଓ ଝିଅମାନେ ସୂତା କାଟି ଲୁଗା ବୁଣି ଦି'ପଇସା ରୋଜଗାର କରନ୍ତି । କୃଷିକାର୍ଯ୍ୟ ପୁରୁଣା ପ୍ରଣାଳୀରେ ହେଉଥିଲା ।

କ୍ରମେ କୃଷି ପ୍ରତି ଲୋକଙ୍କର ଦୃଷ୍ଟି ପଡ଼ିଲା । ଅନେକଙ୍କର ବିଭିନ୍ନ ସ୍ଥାନରେ କୃଷି ପାଇଁ ଭୂମି ଥିଲା । ସେ ବିଷୟରେ ଆନ୍ଦୋଳନ କରି ଏବଂ ପାର୍ଲିଆମେଣ୍ଟର ଦୃଷ୍ଟି ଆକର୍ଷଣ କରି, ଜଣେ ଜଣକର ଭିନ୍ନ ଭିନ୍ନ ସ୍ଥାନରେ ଥିବା କିତାମାନ ବା ଛୋଟ ଛୋଟ କିଆରିସବୁ ଗୋଟିଏ ସ୍ଥାନରେ ଏକାଠି କଲେ । ତହିଁରେ ଚାଷର ସୁବିଧା ହେଲା । ଛୋଟ ଛୋଟ କୃଷକମାନେ ନିଜ ନିଜ ଜମି ବିକି ଦେଲେ । ଧନୀ କୃଷକ ବାହାରି ନୂଆ ପ୍ରଣାଳୀରେ କୃଷି ଆରମ୍ଭ କଲେ । ଏହାପରେ କୃଷିର ଉନ୍ନତି ହେଲା । ଲୋକେ ରାଜନୀତି ଚର୍ଚ୍ଚା ମଧ୍ୟ ଛାଡ଼ି କେବଳ କୃଷିରେ ମନ ଦେଲେ । କୃଷିର ଉପକରଣରେ ମଧ୍ୟ ଅନେକ ଉନ୍ନତି ଦେଖାଗଲା ।

ତେବେ ୧୭୦୦ ଖ୍ରୀ: ଅ: ପର୍ଯ୍ୟନ୍ତ ଲୋକେ ବିଶେଷରୂପେ ମଫସଲରେ ରହି କୃଷି କରୁଥିଲେ । ୧୮୩୦ ଖ୍ରୀ: ଅ: ରେ ଅଧିକାଂଶ ଲୋକ ମଫସଲ ବାସ ଛାଡ଼ିଥିଲେ । ତହୁଁ ଲୋକେ କ୍ରମେ ସହରରେ ବାସ କରିବାକୁ ଆରମ୍ଭ କଲେ ଏବଂ ଶିଳ୍ପ ବାଣିଜ୍ୟରେ ମଧ୍ୟ ଉନ୍ନତି କରିବାକୁ ଆରମ୍ଭ କଲେ । ଲୋକସଂଖ୍ୟାର ବୃଦ୍ଧି ଅନୁସାରେ ସେତେବେଳେ ଇଂଲଣ୍ଡର ଉତ୍ପନ୍ନ ଶସ୍ୟରୁ ଖାଦ୍ୟ ଅକୁଲାନ ହେଲା । ସେମାନେ ବୁଝି ପାରିଲେ, ଶିଳ୍ପ ବାଣିଜ୍ୟର ଉତ୍ପନ୍ନ କରି ସେ ସବୁ ବିଦେଶକୁ ପଠାଇବାକୁ ହେବ ଏବଂ ତତ୍ପରିବର୍ତ୍ତିରେ ବିଦେଶରୁ ଖାଦ୍ୟ ଦ୍ରବ୍ୟ ଆଣିବାକୁ ହେବ । ଶହେ ବର୍ଷ ମଧ୍ୟରେ ଇଂଲଣ୍ଡ କୃଷିପ୍ରଧାନ

ଦେଶରୁ ଏକ ଶିଳ୍ପ ଓ ବାଣିଜ୍ୟପ୍ରଧାନ ଦେଶରେ ପରଣିତ ହେଲା । ଇଂଲଣ୍ଡର ଉପନିବେଶ ଓ ବୈଦେଶିକ ଅଧିକାର ବୃଦ୍ଧି ହେବାରୁ ବାଣିଜ୍ୟ ବ୍ୟବସାୟ ଓ ଶିଳ୍ପବୃଦ୍ଧି ହେବାର ମଧ୍ୟ ସୁବିଧା ଘଟିଥିଲା ।

ଶିଳ୍ପର ଉନ୍ନତି ସକାଶେ ଏବେ ନୂଆ ନୂଆ ଯନ୍ତ୍ରମାନ ମଧ୍ୟ ବାହାରିଲା । ହାତରେ ସୂତା କାଟି ବା ଲୁଗା ବୁଣି ଲୋକମାନେ ବିଶେଷ ଉନ୍ନତି କରି ପାରିଲେ ନାହିଁ । ଯନ୍ତ୍ରଦ୍ୱାରା କିପରି ଅଧିକ ସୂତା କାଟିବେ, ଅଧିକ ଲୁଗା ବୁଣିବେ, ସେ କଥା ସେମାନେ ଭାବିବାକୁ ଲାଗିଲେ । ଜେମ୍ସ ନାମକ ଜଣେ ଲୋକ ୧୭୬୮ ଖ୍ରୀ: ଅ: ରେ "ଦ୍ରୁତବେମା ପାନିଅ" ବାହାର କଲେ । ହାର୍‌ଗ୍ରୀଭ୍ ୧୭୬୪ ଖ୍ରୀ: ଅ: ରେ "ସୁନିକଓିନ ଜେନି" ବାହାର କଲେ । ଆର୍କ-ରାଇଟ୍ ୧୭୬୯ ଖ୍ରୀ: ଅ: ରେ "ଜଳଗତି ଯନ୍ତ୍ର" (Water frame) ନିର୍ମାଣ କଲେ । ଏହାଦ୍ୱାରା ଜଳସ୍ରୋତ ଗତି ସାହାଯ୍ୟରେ କଳ ଚାଲିଲା । ନଦୀ ନିକଟରେ ଏପରି କଳ ରହିଲା ଏବଂ ନଦୀର ସ୍ରୋତରେ ସେହି କଳ ଚାଲିଲା । କ୍ରମ୍ପଟନ୍ ୧୭୭୬ ଖ୍ରୀ:ଅ: ରେ ଜେନି ଓ ଜଅଟର ଫ୍ରେମକୁ 'ମ୍ୟୁଲ' ନାମକ ଯନ୍ତ୍ରରେ ମିଶାଇ ଦେଲେ । ୧୭୮୫ ଖ୍ରୀଷ୍ଟାବ୍ଦରେ କାର୍ଟ-ରାଇଟ୍ 'ଶକ୍ତିତନ୍ତ' (Power loom) ବା ତନ୍ତ୍ର ବାହାର କଲେ । ଏ ସବୁ ଯନ୍ତ୍ରଦ୍ୱାରା ଅଳ୍ପ ଲୋକ, ଅଳ୍ପ ସମୟରେ, ଅଳ୍ପ ପରିଶ୍ରମରେ ଅଧିକ ସୂତା କାଟି ପାରିଲେ, ଅଧିକ ଲୁଗା ବୁଣି ପାରିଲେ ଏବଂ ଶସ୍ତା ଦରରେ ତାହା ବିକି କରି ପାରିଲେ । ତଦ୍ଦ୍ୱାରା ବିଦେଶର ବଜାରମାନଙ୍କରେ ବିଲାତି ବସ୍ତ୍ର ପୂର୍ଣ୍ଣ ହୋଇଗଲା ।

ଏହି କଳମାନ ଲୋକେ ପ୍ରଥମେ ହାତରେ ଚଳାଉଥିଲେ । କ୍ରମେ ଅନେକ କଳକାରଖାନା ବସିଲା । ତା'ପରେ ଜେମସ୍-ୱାଟ୍ ବାଷ୍ପୀୟ କଳ (Steam Engine) ବାହାର କଲେ । କୋଇଲାଖଣିମାନ ଖୋଲା ହେଲା । ଲୁହା ଓ କୋଇଲାର

କାରଖାନାମାନ ବସିଲା । ଲୁହା ଓ କୋଇଲା ଯୋଗେ ବାଷ୍ପୀୟକଳ ଚାଲିବାରୁ କାର୍ଯ୍ୟ ଅଦ୍ଭୁତ ଦ୍ରୁତଗତିରେ ଚାଲିଲା । କାରଖାନାମାନ ବସିବାରୁ ବର୍ମିଂହାମ୍, ଲିଭରପୁଲ୍, ନିଉକାଶ୍‌ଲ ପ୍ରଭୃତି ନୂଆ ନୂଆ ସହରମାନ ବସିଲା ।



ପ୍ରାଚୀନ ଷ୍ଟୀମ୍ ଇଞ୍ଜିନ

ଶିଳ୍ପଜାତ ଦ୍ରବ୍ୟ ନେବା ଆଣିବା କରିବା ପାଇଁ ଭଲ ସଡ଼କ, ରେଳ ରାସ୍ତା, କେନାଲମାନ ଗଢ଼ା ହେଲା । ଇଂଲଣ୍ଡ ଗୋଟିଏ କଳକାରଖାନାର ଦେଶରେ ପରିଣତ ହେଲି । ଇଂଲଣ୍ଡର ଏ ସମସ୍ତ ଉନ୍ନତିକୁ "ଶିଳ୍ପ-ସମୃଦ୍ଧି" ବା "ଶିଳ୍ପ ଆନ୍ଦୋଳନ" କହନ୍ତି ।

## (୩୪)

# ପାର୍ଲିଅଟମେଣ୍ଟ ସଂସ୍କାର ଓ ମନ୍ତ୍ରୀମଣ୍ଡଳ

ପିତାଙ୍କ ମୃତ୍ୟୁ ପରେ ଚତୁର୍ଥ ଜର୍ଜ ୧୮୨୦ଖ୍ରୀ: ଅ: ରେ ରାଜା ହେଲେ ।

ଚତୁର୍ଥ ଜର୍ଜଙ୍କ ଅମଳରେ ପିଲ୍ ଜଣେ ପ୍ରଧାନ ବ୍ୟକ୍ତି ଥିଲେ । ସେ ଜଣେ ତୁଳାବ୍ୟବସାୟୀର ପୁତ୍ର ଏବଂ ଛାତ୍ରଜୀବନରେ



ଚତୁର୍ଥ ଜର୍ଜ

ଭଲ ବୁଦ୍ଧିର ପରିଚୟ ଦେଇଥିଲେ । ୩୪ ବର୍ଷ ବୟସରେ ସେ ବଳତର ହୋମ୍ ସେକ୍ରେଟରୀ ହୋଇଥିଲେ (୧୮୨୨ ଖ୍ରୀ. ଅ: ) । ସେ ପୋଲିସ୍ ବିଭାଗର ସଂସ୍କାର କରି ବଳିଷ୍ଠ ଲୋକମାନଙ୍କୁ ତହିଁରେ ନିଯୁକ୍ତ

କଲେ । ୧୮୪୧ ଖ୍ରୀ: ଅ: ରୁ ୧୮୪୬ ଖ୍ରୀ: ଅ: ପର୍ଯ୍ୟନ୍ତ ସେ ପ୍ରଧାନ ମନ୍ତ୍ରୀ ଥିଲେ । ସେ ଶସ୍ୟ-ଆଇନ ବା କର୍ଣ୍ଣ-ଲଅ ଉଠାଇ ଦେଇ ଅବାଧ ବାଣିଜ୍ୟ ଚଳାଇଥିଲେ ।

ଚତୁର୍ଥ ଜର୍ଜ ୧୮୩୦ ଖ୍ରୀ: ଅ: ରେ ମଲେ । ତାଙ୍କ ପରେ ଚତୁର୍ଥ ଉଇଲିୟମ୍ ରାଜା ହୋଇଥିଲେ । ୧୮୩୩ ଖ୍ରୀ: ଅ: ରେ ବ୍ରିଟିଶ ସରକାର ଦୁଇ କୋଟି ପାଉଣ୍ଡ ଖରଚ କରି କ୍ରୀତଦାସମାନଙ୍କୁ ସେମାନଙ୍କ ମାଲିକମାନଙ୍କଠାରୁ କିଣି ନେଇ ସେମାନଙ୍କୁ ଖଲାସ କରିଦେଲା ।

ଚତୁର୍ଥ ଉଇଲିୟମ୍ ସାତ ବର୍ଷ ମାତ୍ର ରାଜତ୍ୱ କରିଥିଲେ । ତାଙ୍କ ପରେ ମହାରାଣୀ ଭିକ୍ଟୋରିଆ ଇଂଲଣ୍ଡର ସିଂହାସନରେ ବସିଲେ ।

ଲୋକେ ହାତରେ ସୂତା କାଟି ଓ ଲୁଗା ବୁଣି ନିଜ ପେଟ ପୋଷୁଥିଲେ । କଳକାରଖାନା ହେବାରୁ କେବଳ ଧନୀମାନେ ଅଧିକ ଲାଭ କଲେ । ଗରିବମାନେ ହାନିରେ ପଡ଼ିଲେ । କେତେକ କଳକାରଖାନା ବିଦେଶ ସଙ୍ଗେ ପ୍ରତିଯୋଗିତା କରି ନ ପାରିବାରୁ ବନ୍ଦ ହୋଇଗଲା । ତହିଁର ମଜୁରିଆମାନେ କାମ ନ ପାଇ ଭୋକରେ ମଲେ । ଏଥି ଲୋକମାନେ ମନେ କଲେ ଯେ ପାର୍ଲିଆମେଣ୍ଟ ସେମାନଙ୍କ ସକାଶେ କିଛି କରୁ ନାହିଁ; ସୁତରାଂ ଭଲ ଭଲ ଲୋକ ମେମ୍ବର ହେଲେ, ସେମାନଙ୍କ ଦୁର୍ଦ୍ଦଶା ଘୁଞ୍ଚିବ । ଶ୍ରମଜୀବୀମାନେ ଗୋଟିଏ ଗୋଟିଏ ସଂଘ ସ୍ଥାପନ କରି ନିଜ ନିଜ ଅଭାବ, ଅସୁବିଧା ଓ ପ୍ରୟୋଜନ ସରକାରଙ୍କୁ ଜଣାଇଲେ ।

୧୮୩୨ ଖ୍ରୀ: ଅ: ପର୍ଯ୍ୟନ୍ତ କେବଳ ଭୂମ୍ୟଧିକାରୀମାନେ ପାର୍ଲିଆମେଣ୍ଟର ସଭ୍ୟ ବାଛିବା ପାଇଁ ଭୋଟ ଦେଉଥିଲେ । ଏବେ ଶିଳ୍ପ ବାଣିଜ୍ୟ କରି ଲୋକେ ଭୂମ୍ୟଧିକାରୀମାନଙ୍କଠାରୁ ଧନବଳରେ ବଳି ଯାଇଥିଲେ ।



ପୀଲ୍

ଏତେବେଳେ କେତେକ ବଡ଼ ବଡ଼ ନୂଆ ସହର ବସିଥିଲା । ପୂର୍ବେ ବଡ଼ ସହର ବା ଗ୍ରାମ ନ ଥିଲା ବୋଲି ସେ ବେଳର ସାନ ସାନ ସହର ବା ଗ୍ରାମ ଜଣେ ଦୁଇ ଜଣ ପ୍ରତିନିଧି ପଠାଉଥିଲା, ଅଥଚ ନୂଆ ନୂଆ ବଡ଼ ସହରଗୁଡ଼ିକ ପ୍ରତିନିଧି ପଠାଇବାର ଅଧିକାର ପାଇ ନ ଥିଲା ।

ଏ ସବୁ ଅବସ୍ଥା ବିଚାର କରି ଚତୁର୍ଥ ଉଇଲିୟମଙ୍କ ପ୍ରଧାନ ମନ୍ତ୍ରୀ ଲର୍ଡ଼ ଗ୍ରେ ପାର୍ଲିଅମେଣ୍ଟର ସଂସ୍କାର କଲେ । ତଦ୍ୱାରା ନୂଆ ନଗରମାନ ସଭ୍ୟ ପଠାଇବାର ଅଧିକାର ପାଇଲେ; ଭୂମ୍ୟଧିକାରୀମାନଙ୍କ ଛଡ଼ା ମଧ୍ୟବିତ୍ତ ଶ୍ରେଣୀର ଲୋକେ ଭୋଟ ଦେବାର ଅଧିକାର ପାଇଲେ । ଶ୍ରମଜୀବୀମାନଙ୍କୁ କିଛି ଅଧିକାର ମିଳିଲା ନାହିଁ (୧୮୩୨ ଖ୍ରୀ: ଅ:) ।



ଭିକ୍ଟୋରିଆ

ଶ୍ରମଜୀବୀମାନେ ପୂର୍ବ ପରି ଭୋକରେ ମଲେ । ସେମାନଙ୍କର କଷ୍ଟ ଉନ୍ନତ ହେଲା ନାହିଁ । ସେମାନେ ପୂର୍ବପରି ଦୁର୍ଦ୍ଦଶା ଭିତରେ ରହି ଜୀବନ ଯାପନ କଲେ । ଅନେକେ ଦିନେ ପେଟପୂରା ଖାଇବାକୁ ପାଉ ନ ଥିଲେ । ଶ୍ରମଜୀବୀମାନେ ବୁଝିଲେ, ସେମାନେ ନିଜେ ପାର୍ଲିଅମେଣ୍ଟକୁ ନ ଗଲେ ସେମାନଙ୍କ ପାଇଁ କେହି ଚେଷ୍ଟା କରିବେ ନାହିଁ, କି ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବେ ନାହିଁ । ତେଣୁ ସେମାନେ ମିଳି ଗୋଟିଏ “ସାଧାରଣ କ୍ଷମତାଦାନପତ୍ର” ଲେଖି ସରକାରଙ୍କୁ ଦେଲେ । ତଦ୍ୱାରା ସେମାନେ ଜଣାଇଲେ ଯେ, ଦୋଷୀ ନ ଥିଲେ ସବୁ ଲୋକଙ୍କୁ ଭୋଟ ଦେବାର ଅଧିକାର ଦିଆଯାଉ ଏବଂ ପ୍ରତ୍ୟେକ ବୟସ୍କ ବ୍ୟକ୍ତି ଭୋଟ ଦେବାର ଅଧିକାର ପାଉ । ଶ୍ରମଜୀବୀମାନଙ୍କୁ ଅଧିକ ପରିମାଣରେ କାମ ଦିଆଯାଉ । ସେମାନଙ୍କର ଦୈନିକ ଦରମା ଠିକ କରି ଦିଆଯାଉ ।

“ଆଠ ଘଣ୍ଟା କାମ, ଆଠ ଘଣ୍ଟା ଅବସର,
ଆଠ ଘଣ୍ଟା ନିଦ, ଆଠ ଶିଲିଂ ଦିନର ।”

ସେମାନଙ୍କର ଏହି ଦୁଇ ଧାଡ଼ି ଗୀତରୁ ସେମାନଙ୍କର ସେତେବେଳର ମନର ଭାବ ବୁଝା ପଡ଼ୁଛି । ଶ୍ରମଜୀବୀମାନଙ୍କ ମନର ଓ କଥାର ବଳ ଦିନକୁ ଦିନ ବଢ଼ୁଥିଲା । ସରକାର ବିପଦକୁ ବୁଝିଲେ, ସେମାନଙ୍କର ଦାବୀ ରକ୍ଷା ନ କଲେ ଦେଶରେ ଘୋର ଅଶାନ୍ତି ବଢ଼ିବ ।

ପ୍ରଧାନ ମନ୍ତ୍ରୀ ଡିଜ୍‌ରେଲି ବା ଲର୍ଡ ବେକନ୍‌ସ୍‌ଫିଲ୍ଡ ଦ୍ୱିତୀୟ ଥର ସକାଶେ ପାର୍ଲିଅମେଣ୍ଟର ସଂସ୍କାର କଲେ । ଏଥର ଭୋଟର-



ଲର୍ଡ଼ ବେକନ୍‌ସ୍ ଫିଲ୍‌ଡ୍

ମାନଙ୍କ ସଂଖ୍ୟା ବଢ଼ିଲା । ପ୍ରାୟ ପ୍ରତ୍ୟେକ ବୟଃପ୍ରାପ୍ତ ଲୋକ ଭୋଟ ଦେବାର ଅଧିକାର ପାଇଲେ (୧୮୬୭ ଖ୍ରୀ: ଅ:) ।

୧୮୮୪ ଖ୍ରୀ: ଅ: ରେ ପ୍ରଧାନ ମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍ ଏହି ଭୋଟ ଓ ସଭ୍ୟ ସମ୍ବନ୍ଧରେ ଆହୁରି ଅଧିକ ପରିବର୍ତ୍ତନ କରି ପାର୍ଲିଆମେଣ୍ଟର



ଗ୍ଲାଡ୍‌ଷ୍ଟୋନ୍

ଆଉ ଥରେ ସଂସ୍କାର କରିଥିଲେ । ଏଥିରେ କୃଷିଜୀବୀ ଓ ଶ୍ରମଜୀବୀ ମାନଙ୍କର କ୍ଷମତା ଆହୁରି ଅଧିକ ବଢ଼ିଥିଲା । ମଫସଲ୍‌ରେ ବାସ କରୁଥିବା ଗୃହାଧିକାରୀମାନେ ମଧ୍ୟ ଭୋଟ ଅଧିକାର ପାଇଥିଲେ ।

୧୯୧୮ ଖ୍ରୀ: ଅ: ରେ ପୁଣି ଥରେ ପାର୍ଲିଆମେଣ୍ଟର ସଂସ୍କାର ହୋଇ-ଥିଲା । ସେଥିରେ ସ୍ତ୍ରୀମାନେ ମଧ୍ୟ ଭୋଟ ଦେବାର କ୍ଷମତା ପାଇଲେ ।

ଛଅ ନିୟୁତ ସ୍ତ୍ରୀ ଏହି ସଂସ୍କାର ପରେ ପାର୍ଲିଅମେଣ୍ଟର ଭୋଟର୍ ଲିଷ୍ଟର ଅନ୍ତର୍ଭୁକ୍ତ ହୋଇଥିଲେ ।

୧୯୨୮ ଖ୍ରୀ: ଅ: ରେ ଏକୋଇଶ ବର୍ଷରୁ ଅଧିକ ବୟସର ସବୁ ସ୍ତ୍ରୀ ଭୋଟକ୍ଷମତା ପାଇଲେ ।

ପ୍ରାଥମିକ ଶିକ୍ଷା ଦେଶର ଉନ୍ନତି ସକାଶେ ବିଶେଷ ଆବଶ୍ୟକ । ଇଂଲଣ୍ଡ ସରକାର ଏ ବିଷୟ ଭୁଲିଯାଇ ନ ଥିଲେ । ୧୮୭୦ ଖ୍ରୀ: ଅ: ରେ ପ୍ରତି ଗ୍ରାମରେ ପ୍ରାଥମିକ ସ୍କୁଲ ସରକାର ତରଫରୁ ବସିଥିଲା । ୧୯୩୧ ଖ୍ରୀ: ଅ: ରେ ପ୍ରତି ପିଲାଙ୍କୁ ପନ୍ଦର ବର୍ଷ ବୟସ ପର୍ଯ୍ୟନ୍ତ ସ୍କୁଲରେ ରହି ପଢ଼ିବାକୁ ବାଧ୍ୟ କରାଯାଇଥିଲା ।

୧୮୮୪ ଖ୍ରୀ: ଅ: ରେ ରାମ୍‌ସେ ମାକ୍‌ଡୋନାଲ୍‌ଡ୍ ପାର୍ଲିଅମେଣ୍ଟରେ ଏକ ଶ୍ରମଜୀବୀ ଦଳ ଗଠନ କଲେ । ସେ ଶ୍ରମଜୀବୀଦଳର ସଭ୍ୟ ହୋଇ ପାର୍ଲିଅମେଣ୍ଟକୁ ଯାଇଥିଲେ । ଶ୍ରମଜୀବୀଦଳ କ୍ରମେ ଉନ୍ନତି କରିବାକୁ ଲାଗିଲେ । ୧୯୨୪ ଖ୍ରୀ: ଅ: ରେ ପାର୍ଲିଅମେଣ୍ଟରେ ସେମାନଙ୍କର ସଂଖ୍ୟା ଅଧିକ ହେଲା । ଫଳରେ ମାକ୍‌ଡୋନାଲ୍‌ଡ୍ ପ୍ରଧାନ ମନ୍ତ୍ରୀରୂପେ ନିର୍ବାଚିତ ହେଲେ । ୧୯୨୯ ଖ୍ରୀ: ଅ: ରେ ଏହି ଦଳ ପୁଣି ମନ୍ତ୍ରୀମଣ୍ଡଳ ଗଠନ କରିବାର କ୍ଷମତା ପାଇଲା ।

---

## (୩୪)

## ଉପନିବେଶ ଓ ସାମ୍ରାଜ୍ୟ

ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଇଂରେଜମାନେ ଫରାସୀ ଓ ଓଲନ୍ଦାଜ୍‌ମାନଙ୍କ ସଙ୍ଗେ ବାଣିଜ୍ୟରେ ପ୍ରତିଯୋଗିତା କରୁଥିଲେ । ଭାରତ, ଆମେରିକା ଓ ଅଷ୍ଟ୍ରେଲିଆ ପ୍ରତିଯୋଗିତାର ପ୍ରଧାନ ସ୍ଥାନ ଥିଲା । ବଣିକମାନେ ଜିନିଷ ବିକିବା ଲାଗି ନୂଆ ନୂଆ ବଜାର

ଖୋଜୁଥିଲେ । ଏଥି ସକାଶେ ଦୂରତା ଓ ବିପଦ ପ୍ରଭୃତି ସେମାନେ ଖାତିର କରୁ ନ ଥିଲେ । ଯେଉଁମାନେ ଦେଶ ଛାଡ଼ି ଯାଇ ଦୂରରେ ଉପନିବେଶ କରି ରହୁଥିଲେ, ସେମାନେ ଅନ୍ୟମାନଙ୍କ ଅପେକ୍ଷା ନିଶ୍ଚୟ ସାହସୀ, କର୍ମଠ ଓ ସ୍ୱାଧୀନତାପ୍ରିୟ ଲୋକ ହେବେ । ଏହାର ଫଳରେ ସେମାନେ ଉପନିବେଶମାନଙ୍କରେ ରହି ଉନ୍ନତି କଲେ ଏବଂ କାଳକ୍ରମେ ଅନେକ ଉପନିବେଶ ସ୍ୱାୟତ୍ତ ଶାସନ ପାଇଲା ।

## କାନାଡ଼ା

କାନାଡ଼ାରେ ପ୍ରଥମେ ଫରାସୀମାନେ ଉପନିବେଶ କରି ରହିଥିଲେ । "ସପ୍ତବର୍ଷ ଯୁଦ୍ଧ"ରେ ଇଂରେଜମାନେ ଫରାସୀମାନଙ୍କଠାରୁ କାନାଡ଼ାର ଅଧିକାର କାଢ଼ିନେଲେ । ୧୭୮୩ ଖ୍ରୀଃଅଃ ରେ ଷାଠିଏ ହଜାର ନୂଆ ଲୋକ ଯାଇ କାନାଡ଼ାରେ ବାସ କଲେ । ଏମାନେ ବିଲାତର ପାର୍ଲିଅମେଣ୍ଟର ଅନୁକରଣରେ ଏକ ପାର୍ଲିଅମେଣ୍ଟ ପାଇବାକୁ ଚାହିଁଲେ । ଆମେରିକା ଯୁକ୍ତରାଜ୍ୟର ସ୍ୱାଧୀନତାଯୁଦ୍ଧରୁ ବିଲାତ ବହୁତ ଶିକ୍ଷା ପାଇଥିଲା; ତେଣୁ ୧୭୯୧ ଖ୍ରୀଃ ଅଃ ରେ ପ୍ରଧାନ ମନ୍ତ୍ରୀ ପିଟ୍ ସେମାନଙ୍କୁ ସ୍ୱାୟତ୍ତଶାସନ ଦେଲେ ।

କାନାଡ଼ା ଗୋଟିଏ କଲୋନି । ଏଠାରେ ଗୋଟିଏ ପାର୍ଲିଅମେଣ୍ଟ ଅଛି । ମନ୍ତ୍ରୀମାନେ ପାର୍ଲିଅମେଣ୍ଟର ଅଧୀନ । ବିଲାତ ସରକାର କେବଳ ଜଣେ ଗଭର୍ଣ୍ଣର ଜେନେରଲ ନିଯୁକ୍ତ କରନ୍ତି । ବିଲାତରେ ରଜାଙ୍କର ଯେଉଁ କ୍ଷମତା, କାନାଡ଼ାରେ ଗଭର୍ଣ୍ଣର ଜେନେରଲଙ୍କ ସେହି କ୍ଷମତା ଅଛି । ଅଟାଓ୍ୱା କାନାଡ଼ାର ରାଜଧାନୀ ଅଟେ ।

## ନିଉ ଫାଉଣ୍ଡ୍‌ଲାଣ୍ଡ

ଜନ୍ କେବଟ୍ ୧୪୯୭ ଖ୍ରୀଃ ଅଃ ରେ ଏହା ଅବିଷ୍କାର କରିଥିଲେ । ୧୫୮୩ ଖ୍ରୀଃ ଅଃ ରେ ଏହା ଗୋଟିଏ ଉପନିବେଶ ହେଲା ।

କାଠ, ମାଛ ଏହାର ପ୍ରଧାନ ବ୍ୟବସାୟ । ୧୮୫୫ ଖ୍ରୀ: ଅ: ରେ ଏହା ସ୍ୱାୟତ୍ତଶାସନ ପାଇଅଛି ।

## ଅଷ୍ଟ୍ରେଲିଆ

ଜେମ୍ସ କୁକ୍ ୧୭୬୮ ଖ୍ରୀ: ଅ: ରେ ପ୍ରଥମେ ନିଉଜିଲାଣ୍ଡ ଓ ଅଷ୍ଟ୍ରେଲିଆ ଦେଖିଲେ । ୧୭୮୮ ଖ୍ରୀ: ଅ: ରେ ଇଂଲଣ୍ଡର ଦୋଷୀ ବା ଦଣ୍ଡିତ ବ୍ୟକ୍ତିମାନଙ୍କୁ ଅଷ୍ଟ୍ରେଲିଆକୁ ନିର୍ବାସିତ କରିବାର ବିଧି ହେଲା । ଏହାପରେ ଅଷ୍ଟ୍ରେଲିଆ ଏକ ଉପନିବେଶରେ ପରିଣତ ହେଲା ।

ଅସ୍ଥାୟୀ ନୂଆ ଲୋକେ ଏଠାରେ ମେଷ ପାଳିବା ଆରମ୍ଭ କଲେ । ୧୮୫୧ ଖ୍ରୀ: ଅ: ରେ ଏଠାରେ ସୁନାଖଣି ଆବିଷ୍କୃତ ହେଲା । ଲୋକେ ସୁନାଲୋଭରେ ସମୁଦ୍ର ଲଙ୍ଘି ପରି ଅଷ୍ଟ୍ରେଲିଆକୁ ଆସି ଉପନିବେଶ ସ୍ଥାପନ କଲେ ।

ଏଠାରେ ପ୍ରଥମେ ପାଞ୍ଚଟି କଲୋନି ଥିଲା ଏବଂ ସମସ୍ତେ ସ୍ୱାୟତ୍ତଶାସନ ପାଇଥିଲେ । ୧୯୦୧ ଖ୍ରୀ: ଅ: ରେ ପାଞ୍ଚଟିଯାକ କଲୋନି ମିଶି "ଅଷ୍ଟ୍ରେଲିଆ ସାଧାରଣ ତନ୍ତ୍ର" ଗଠିତ ହେଲା । କେନ୍‌ବେରା ଏହାର ରାଜଧାନୀ ହୋଇଅଛି ।

## ନିଉଜିଲାଣ୍ଡ

ଏହା ଆକାରରେ ଗ୍ରେଟ୍‌ବ୍ରିଟେନର ସମାନ । ଏଠାର ଆଦିମ ଅଧିବାସୀମାନଙ୍କୁ ମାଓରି କହନ୍ତି । ଆଜିକାଲି ମାଓରିମାନେ ଆଗପରି ଇଂରେଜମାନଙ୍କ ସଙ୍ଗେ କଳି କରୁ ନାହାନ୍ତି । ମାଓରିମାନେ ଦେଖିବାକୁ ସୁନ୍ଦର, ଡେଙ୍ଗା ଓ ବୁଦ୍ଧିମାନ୍ ।

୧୮୪୧ ଖ୍ରୀ: ଅ: ରେ ନିଉଜିଲାଣ୍ଡ ଗୋଟିଏ କଲୋନି ହେଲା ଏବଂ ୧୮୮୫ ଖ୍ରୀ: ଅ: ରେ ତାହା ସ୍ୱାୟତ୍ତଶାସନ ପାଇଲା । ୧୯୦୭ ଖ୍ରୀ: ଅ: ରୁ ଏହା ଏକ ଡୋମିନିଅନରେ ପରିଣତ ହୋଇଅଛି ।

## ଅଫ୍ରିକା

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଅଫ୍ରିକାର ଭିତରର ଅଞ୍ଚଳମାନ କେହି ଆବିଷ୍କାର କରି ନ ଥିଲେ । ସେଥିପାଇଁ ଏହାକୁ "ତମସାଚ୍ଛନ୍ନ" ମହାଦେଶ କହୁଥିଲେ । ଏଠାରେ ସୁନା, ହାତୀଦାନ୍ତ, ରବର ପ୍ରଭୃତି ଲାଭଜନକ କାରବାର ଥିବାର ଦେଖି ୟୁରୋପୀୟମାନେ ଏଠାରେ ଖଣ୍ଡିଏ ଖଣ୍ଡିଏ ସ୍ଥାନ ଅଧିକାର ସ୍ଥାପନ କରିଥିଲେ ।

ଇଂରେଜମାନେ କେପ୍-କଲୋନି, ନେଟାଲ୍, ଗୋଲ୍ଡ଼ କୋଷ୍ଟ, ସିରାଲିଓନ୍, ବେଚୁଆନା ଲାଣ୍ଡ, ରୋଡେସିଆ, ନାଇଜେରିଆ, ଉଗାଣ୍ଡା ଓ ବ୍ରିଟିଶ୍ ଇଷ୍ଟ ଅଫ୍ରିକା ଅଧିକାର କରିଥିଲେ । ଓଲନ୍ଦାଜ ବୋଅର ଜାତିର ଲୋକ ଓ ଇଂରେଜମାନଙ୍କ ମଧ୍ୟରେ ୧୮୮୦ ଖ୍ରୀ: ଅ: ରେ ପ୍ରଥମେ ଯୁଦ୍ଧ ହେଲା ।

ବୋଅରମାନେ ଇଂରେଜମାନଙ୍କୁ ନିମ୍ନମତେ ନିନ୍ଦାବାଦ କରିଥିଲେ । "ଆମ୍ଭେମାନେ ଏହି ଦେଶରେ ପ୍ରଥମେ ଥିଲୁ । ତୁମ୍ଭେମାନେ ଆସି ଆମ୍ଭମାନଙ୍କୁ ତଡ଼ିଲ । ଥରେ ନୁହେ, ଦୁଇଥର ନୁହେ, ଅନେକ ଥର ଆମ୍ଭେମାନେ ଉତ୍ତରକୁ କ୍ରମେ ପଳାଇଲୁ । ତୁମ୍ଭେମାନେ ସର୍ବଦା ଆମ୍ଭ ପଛରେ ଗୋଡ଼ାଇ ଆମ୍ଭମାନଙ୍କୁ ବିରକ୍ତ କରୁଛ । ୧୮୮୪ ଖ୍ରୀ: ଅ: ରେ ତୁମ୍ଭେମାନେ ଆମ୍ଭର ଟ୍ରାନ୍ସଭାଲ୍ ଓ ଅରେଞ୍ଜ୍-ଫ୍ରିଷ୍ଟେଟର ସ୍ୱାଧୀନତା ସ୍ୱୀକାର କଲ । ଏବେ କିମ୍ବର୍ଲିରେ ହୀରା ଓ ଜୋହାନ୍ସବର୍ଗରେ ସୁନା ମିଳିଲା ବୋଲି ତୁମ୍ଭେମାନେ ପୁଣି ଆମ୍ଭ ପାଖକୁ ଆସିଲ, ଅର୍ଥଲୋଭରେ ପୁଣି ଆମ୍ଭମାନଙ୍କୁ ବ୍ୟତିବ୍ୟସ୍ତ କରୁଛ ?"

୧୯୧୦ ଖ୍ରୀ: ଅ: ରେ କେପ୍ କଲୋନି, ନେଟାଲ୍, ଟ୍ରାନ୍ସଭାଲ୍ ଓ ଅରେଞ୍ଜ ଫ୍ରିଷ୍ଟେଟ୍ ମିଶି "ଦକ୍ଷିଣ ଅଫ୍ରିକା ୟୁନିୟନ" ଗଠିତ

ହୋଇଅଛି । ଏହା ଗୋଟିଏ କଲୋନି ଏବଂ ସ୍ୱାୟତ୍ତଶାସନ ପାଇଅଛି ।

## ଭାରତବର୍ଷ

ମୋଗଲ ଶାସନବେଳେ ଇଂରେଜମାନେ ବାଣିଜ୍ୟ କରିବାକୁ ଆସି ଭାରତରେ କୋଠି ସ୍ଥାପନ କରିଥିଲେ । ମୋଗଲ ସାମ୍ରାଜ୍ୟର ପତନରେ ସେମାନେ ଦେଶୀୟ ରାଜାମାନଙ୍କ ଗୋଳମାଳରେ ହସ୍ତକ୍ଷେପ କରି ରାଜ୍ୟ ସ୍ଥାପନ କଲେ । ୧୭୫୭ ଖ୍ରୀଃ ଅଃ ରେ ବଙ୍ଗଳା ପ୍ରଥମେ ସେମାନଙ୍କର ହସ୍ତଗତ ହେଲା । ଏହି ରାଜ୍ୟର ସୀମା କ୍ରମେ ବଢ଼ାଇ, ଲର୍ଡ ଡେଲହାଉସୀଙ୍କ ଅମଳରେ ଇଂରେଜ ବଣିକ-ମାନେ ସମଗ୍ର ଭାରତର ସର୍ବେସର୍ବା ହେଲେ ।

ଏହି ଅଧିକୃତ ଦେଶରେ ସେମାନେ ରେଲ, ଟେଲିଗ୍ରାଫ, ଡାକ ଓ ଶିକ୍ଷା ପ୍ରସାର କରିଥିଲେ ଏବଂ ଶାନ୍ତି ସ୍ଥାପନ କରିଥିଲେ ।

ପାଶ୍ଚାତ୍ୟ ଶିକ୍ଷା ଲାଭ କରି ଭାରତବାସୀ ସ୍ୱାୟତ୍ତଶାସନ ପାଇବା ନିମନ୍ତେ ଆନ୍ଦୋଳନ କଲେ । ନିଜର ଇଚ୍ଛାକୁ ସଂଘବଦ୍ଧ ଭାବରେ ପ୍ରକାଶ କରିବା ନିମନ୍ତେ ସେମାନେ ୧୮୮୫ ଖ୍ରୀଃ ଅଃ ରେ କଂଗ୍ରେସ୍ ବା ଭାରତୀୟ ଜାତୀୟ ମହାସଭା ଗଢ଼ିଲେ ।

୧୯୦୯ ଖ୍ରୀଃ ଅଃ ରେ ବିଲାତ ସରକାର ଭାରତର ବ୍ୟବସ୍ଥାପକ ସଭାମାନଙ୍କରେ ନିର୍ବାଚିତ ସଭ୍ୟ ଗ୍ରହଣ କରିବାର ବ୍ୟବସ୍ଥା କଲେ । ୧୯୨୦ ଖ୍ରୀଃ ଅଃ ରେ ସେହି ନିର୍ବାଚିତ ସଭ୍ୟ ନେବାର ପ୍ରଣାଳୀ ଦୃଢ଼ ହୋଇଥିଲା; କିନ୍ତୁ ଭାରତୀୟମାନେ ସେଥିରେ ସନ୍ତୁଷ୍ଟ ନ ହୋଇ ଆହୁରି ଅଧିକ ଆନ୍ଦୋଳନ କଲେ । ଫଳରେ ୧୯୩୭ ଖ୍ରୀଃ ଅଃ ରେ ଭାରତକୁ ଆହୁରି ଅଧିକ କ୍ଷମତା ମିଳିଲା ଏବଂ ଭବିଷ୍ୟତରେ ତହିଁରୁ ଅଧିକ ମିଳିବ ବୋଲି ଲୋକେ ଆଶା କରୁଅଛନ୍ତି ।

## ଆୟର୍ଲଣ୍ଡ

୧୮୦୦ ଖ୍ରୀ: ଅ: ରେ ଇଂଲଣ୍ଡ ଓ ଅୟର୍ଲଣ୍ଡର ଦୁଇଟିଯାକ ପାର୍ଲିଅମେଣ୍ଟ ମିଶିଗଲା । ହେଲେହେଁ ଅୟର୍ଲଣ୍ଡରେ କେତେକ କଠିନ ସମସ୍ୟା ଥିଲା । ଭୂମି ଅଇନ ସେହି ସବୁ ସମସ୍ୟା ମଧ୍ୟରେ ପ୍ରଧାନ ଥିଲା । କ୍ୟାଥଲିକ୍‌ମାନେ ଅୟର୍ଲଣ୍ଡର ପ୍ରଧାନ ଅଧିବାସୀ ଓ କୃଷକ ଥିଲେ । ଏମାନେ ସଂଖ୍ୟାରେ ଅନ୍ୟ ଅଧିବାସୀମାନଙ୍କ ଅପେକ୍ଷା ଗୁରୁଗୁଣ ଥିଲେ । ଭୂମିର ମାଲିକମାନେ କୃଷକମାନଙ୍କଠାରୁ ଚଡ଼ା



ଲର୍ଡ଼ ମେଲ୍‌ବୋର୍ଣ୍ଣ

ଦରରେ କର ଅଦାୟ କରୁଥିଲେ । ଯାଜକମାନେ ମଧ୍ୟ କର ଅଦାୟ କରୁଥିଲେ । ଫଳରେ କୃଷକମାନେ କର ଦେବା ପରେ ଖାଇବାକୁ

ପାଇ ନ ଥିଲେ । ଅଣୀଲକ୍ଷ ଅଧିବାସୀ ମଧ୍ୟରୁ ପେଟଜ୍ୱାଳାରେ ଗ୍ଲଣ୍ଡ ଲକ୍ଷ ଆମେରିକାକୁ ପଳାଇଗଲେ ।

ଡେନିଏଲ ଓ'କନେଲ ଏବେ କୃଷକମାନଙ୍କ ନେତା ହୋଇ ଚର୍ଚ୍ଚକୁ କର ଦେବା ବନ୍ଦ କରାଇଲେ । ସେ କର ଦେଉଥିବା କୃଷକମାନଙ୍କୁ ବଧ କଲେ । ସରକାର ବଳପ୍ରୟୋଗ କରି ଶାନ୍ତିରକ୍ଷାର ଚେଷ୍ଟା କଲେ । ମନ୍ତ୍ରୀ ମେଲ୍‌ବୋର୍ଣ୍ଣ ନୂଆ ବ୍ୟବସ୍ଥା କରି କୃଷକମାନଙ୍କ ପରିବର୍ତ୍ତିରେ ଜମିଦାରମାନଙ୍କୁ କର ଦେବାକୁ ଆଇନ କଲେ ।

ଏହାର ଠିକ୍ ଦଶ ବର୍ଷ ପରେ ଓ'କନେଲ "ହୋମରୁଲ" (ସ୍ୱାୟତ୍ତଶାସନ) ଆନ୍ଦୋଳନ ବାହାର କଲେ । ସେ ଆୟର୍ଲଣ୍ଡରେ ଏକ ସ୍ୱାଧୀନ ପାର୍ଲିଆମେଣ୍ଟ ବସାଇବାର ଚେଷ୍ଟା କଲେ (୧୮୪୧ ଖ୍ରୀ: ଅ: ) ।୧୮୪୭ ଖ୍ରୀ: ଅ: ରେ ଓ'କନେଲ ମଲେ ।

୧୮୫୯ ଖ୍ରୀ: ଅ: ରେ "ସିନ୍‌ଫିନ୍" ଦଳ ବାହାରି ଆୟର୍ଲଣ୍ଡରେ ଉତ୍ପାତ ଆରମ୍ଭ କଲେ । ଆୟର୍ଲଣ୍ଡରେ ସ୍ୱାଧୀନ ରାଜ୍ୟସ୍ଥାପନ କରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍ ବଳପୂର୍ବକ ଏହି ଉତ୍ପାତ ବନ୍ଦ କଲେ ।

୧୮୭୯ ଖ୍ରୀ: ଅ: ରେ ପାର୍ନେଲ ଆୟର୍ଲଣ୍ଡର ନେତା ହେଲେ ଏବଂ କହିଲେ, "ହୋମରୁଲ ନ ପାଇଲେ ଆୟର୍ଲଣ୍ଡରେ ଅନ୍ୟ କାହିଁରେ ଶାନ୍ତି ରହିବ ନାହିଁ ।" ଗ୍ଲାଡ୍‌ଷ୍ଟୋନ୍ ୧୮୮୬ ଖ୍ରୀ:ଅ: ରେ ଥରେ ଏବଂ ୧୮୯୩ ଖ୍ରୀ:ଅ:ରେ ଆଉ ଥରେ ଏପରି ଦୁଇ ଥର ହୋମ୍‌ରୁଲ ବିଲ୍ ଆଗତ କଲେ, କିନ୍ତୁ ପାର୍ଲିଆମେଣ୍ଟ ତାହା ମଞ୍ଜୁର କଲା ନାହିଁ । ଆୟର୍ଲଣ୍ଡର ଅଶାନ୍ତି ଦିନକୁଦିନ ବଢ଼ିଲା । ମନ୍ତ୍ରୀମାନେ ଥରକୁ ଥର ହୋମରୁଲ ବିଲ୍ ଆଗତ କରୁଥାଆନ୍ତି । ଶେଷରେ ଲର୍ଡ ସଭାର ମତ ନ ମାନି କମନସ୍ ସଭା ଓ ରାଜା ହୋମରୁଲ ବିଲ୍

ପାସ କଲେ (୧୯୧୪ ଖ୍ରୀ: ଅ: ରେ) । ଇଉରୋପୀୟ ମହାଯୁଦ୍ଧ ହେବାରୁ ସେହି ଆଇନ କାର୍ଯ୍ୟକାରୀ ହେବା ଏକାବେଳେ ସ୍ଥଗିତ ରଖାଗଲା । ତେଣେ ସିନ୍‌ଫିନ୍ ଦଳ ବିଦ୍ରୋହ ଚଳାଇଥାନ୍ତି । ସେମାନେ ଆୟର୍ଲଣ୍ଡକୁ ସ୍ୱାଧୀନ କରିବା ନିମନ୍ତେ ଦୃଢ଼ସଙ୍କଳ୍ପ ଥିଲେ ଏବଂ ଗୋପନରେ ଜର୍ମାନୀର ସାହାଯ୍ୟ ଲୋଡ଼ୁଥିଲେ ।

୧୯୨୦ ଖ୍ରୀ: ଅ: ରେ ପ୍ରଧାନ ମନ୍ତ୍ରୀ ଲୟଡ଼୍ ଜର୍ଜ 'ଆୟର୍ଲଣ୍ଡ ଶାସନ ଆଇନ' ଜାରି କଲେ । ସିନ୍‌ଫିନ୍ ଦଳ ସେଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେମାନେ ଡି-ଭେଲେରାଙ୍କୁ ସଭାପତି କରି 'ଆଇରିଶ୍ ସାଧାରଣତନ୍ତ୍ର' ଘୋଷଣା କଲେ । ଏମାନଙ୍କୁ ଦବାଇବେ ବୋଲି ଇଂରେଜମାନେ ରକ୍ତପାତ ଆରମ୍ଭ କଲେ । କିନ୍ତୁ ଫଳ ହେଲା ନାହିଁ । ଦକ୍ଷିଣ ଆୟର୍ଲଣ୍ଡ ବା ଆୟର୍ଲଣ୍ଡର ଚାରି ଭାଗରୁ ତିନି ଭାଗ ନେଇ ଡି-ଭେଲେରା ୧୯୨୨ ଖ୍ରୀ: ଅ: ରେ ଆଇରିଶ୍ ସ୍ୱାଧୀନ ରାଜ୍ୟ (ଆଇରିଶ ଫ୍ରି ଷ୍ଟେଟ୍) ଗଠନ କଲେ । ବର୍ତ୍ତମାନ ଉତ୍ତର ଆୟର୍ଲଣ୍ଡ ଇଂରେଜ ପାର୍ଲିଆମେଣ୍ଟର ଅଧୀନରେ ରହିଅଛି । ଏଠାରେ ସ୍ଥାନୀୟ ବିଷୟର ସମାଧାନ ସକାଶେ ଗୋଟିଏ ପାର୍ଲିଆମେଣ୍ଟ ରହିଅଛି ।

ଆଇରିଶ୍ ସ୍ୱାଧୀନ ରାଜ୍ୟ ଅଲଗା ହୋଇଥିଲେ ମଧ୍ୟ ଇଂରେଜ ରାଜାଙ୍କୁ ସେମାନେ ନିଜର ରାଜା ବୋଲି ଗ୍ରହଣ କରିଛନ୍ତି ।

---

## (୩୬)

## ଉଇଣ୍ଡ୍‌ସର ରାଜବଂଶ

ଭିକ୍ଟୋରିଆ ୧୮୩୭ ଖ୍ରୀ:ଅ: ରେ ଇଂଲଣ୍ଡର ରାଣୀ ହେଲେ । ତାଙ୍କ ରାଜତ୍ୱରେ ଇଂଲଣ୍ଡର ଅଶେଷ ଉନ୍ନତି ଓ ପରିବର୍ତ୍ତନ ହୋଇଥିଲା ।

ସେଥି ସକାଶେ ତାଙ୍କ ରାଜତ୍ୱକୁ ଇତିହାସରେ 'ଭିକ୍ଟୋରିଆ ଯୁଗ' କହନ୍ତି । ତାଙ୍କ ପରେ ତାଙ୍କ ପୁତ୍ର ଅଲ୍‌ବର୍ଟ ଏଡ୍‌ୱାର୍ଡ



ସପ୍ତମ ଏଡ୍‌ୱାର୍ଡ଼

୭ମ ଏଡ୍‌ୱାର୍ଡ଼ ରୂପେ ଇଂଲଣ୍ଡର ରାଜା ହେଲେ । ସେ ବହୁ ଦେଶ ଭ୍ରମଣ କରିଥିଲେ । ଦେଶରେ କିପରି ଶାନ୍ତି ସ୍ଥାପିତ ହେବ, ଏ କଥା ସେ ସବୁବେଳେ ଚିନ୍ତୁଥିଲେ । ଏଥି ସକାଶେ ତାଙ୍କୁ "ଶାନ୍ତିସ୍ଥାପକ ଏଡ୍‌ୱାର୍ଡ଼" କହନ୍ତି ।

ଏଡ୍‌ୱାର୍ଡ଼ ୧୯୦୨ ଖ୍ରୀ: ଅ: ରେ ଜାପାନ ସଙ୍ଗେ ଏବଂ ୧୯୦୩ ଖ୍ରୀ: ଅ: ରେ ଫ୍ରାନ୍‌ସ ସଙ୍ଗେ ମିତ୍ରତା ସ୍ଥାପନ କଲେ । ଫ୍ରାନ୍‌ସ ଓ ଇଂଲଣ୍ଡ ମଧ୍ୟରେ କେତେ ଦିନରୁ କିପରି ବିବାଦ ଚାଲି ଥିଲା, ତୁମ୍ଭେମାନେ ସେ କଥା ଆଗରୁ ପଢ଼ିଛ । ଏଡ୍‌ୱାର୍ଡ଼ ସେହି ବିବାଦ ମେଣ୍ଟାଇଲେ ଏବଂ ଫ୍ରାନ୍‌ସ ସଙ୍ଗେ ୧୯୦୩ ଖ୍ରୀ: ଅ: ରୁ ଏ ପର୍ଯ୍ୟନ୍ତ ସେହି ମିତ୍ରତା ଅକ୍ଷୁଣ୍ଣ ରହିଅଛି । ଇଂଲଣ୍ଡ ଓ ରୁଷ୍ ମଧ୍ୟରେ ମଧ୍ୟ ଅନେକ ଦିନରୁ ସନ୍ଦେହ ଓ ବିଦ୍ୱେଷଭାବ ରହିଥିଲା । ୧୯୦୭ ଖ୍ରୀ: ଅ: ରେ ଇଂଲଣ୍ଡ ଓ ରୁଷ୍ ସଙ୍ଗେ ମଧ୍ୟ ବନ୍ଧୁତା ଓ ସନ୍ଧି ସ୍ଥାପିତ ହେଲା ।

ଏହିପରି ସନ୍ଧି ଓ ଶାନ୍ତି ସ୍ଥାପନ କରି ଏଡ୍‌ୱାର୍ଡ଼ ୧୯୧୦ ଖ୍ରୀ: ଅ: ରେ ମଲେ । ତାଙ୍କ ପରେ ତାଙ୍କ ପୁତ୍ର ପଞ୍ଚମ ଜର୍ଜ ରାଜା ହେଲେ । ଏହାଙ୍କଠାରୁ ୱିଣ୍ଡ୍‌ସର ରାଜବଂଶର ଆରମ୍ଭ । ପଞ୍ଚମ ଜର୍ଜଙ୍କ ଅମଳରେ ଇଉରୋପ ମହାସମର ଘଟିଥିଲା ।

ଜର୍ମାନି ୪୦ ବର୍ଷ ଧରି ଯୁଦ୍ଧ ସକାଶେ ପ୍ରସ୍ତୁତ ହେଉଥିଲା । ଅଷ୍ଟ୍ରିଆର ଯୁବରାଜ ୧୯୧୪ ଖ୍ରୀ: ଅ: ରେ ସାର୍‌ବିଆ ଅନ୍ତର୍ଗତ ବସ୍‌ନିଆଠାରେ ନିହତ ହେଲେ । ସାର୍‌ବିଆ କ୍ଷତିପୂରଣ ନ ଦେବାରୁ ଯୁଦ୍ଧ ହେଲା । ଗୋଟିଏ ଗୋଟିଏ କରି ୟୁରୋପର ପ୍ରାୟ ସମସ୍ତ ଦେଶ ଓ ଆମେରିକାର ଯୁକ୍ତରାଜ୍ୟ ଏହି ଯୁଦ୍ଧରେ ଯୋଗ ଦେଲେ । ଏତେ ବଡ଼ ପ୍ରକାଣ୍ଡ ଯୁଦ୍ଧ ପୃଥିବୀରେ ଆଉ କେବେ ହୋଇଥିବାର ଜଣା ନାହିଁ ।

ଅଷ୍ଟ୍ରିଆ, ଜର୍ମାନୀ, ତୁରସ୍କ, ବୁଲ୍‌ଗେରିଆ ଗୋଟିଏ ପକ୍ଷରୁ ଏବଂ ସାର୍‌ବିଆ, ରୁଷ୍, ଫ୍ରାନ୍‌ସ, ବେଲ୍‌ଜିଅମ, ଇଂଲଣ୍ଡ, ଜାପାନ,



ପଞ୍ଚମ ଜର୍ଜ

ଇଟାଲି, ପର୍ତ୍ତୁଗାଲ, ରୁମାନିଆ, ଗ୍ରୀସ୍, ଓ ଆମେରିକା ଯୁକ୍ତରାଜ୍ୟ ଅପର ପକ୍ଷରୁ ଯୁଦ୍ଧ କଲେ । ୧୯୧୪ ଖ୍ରୀ:ଅ:ରୁ ୧୯୧୮ ଖ୍ରୀ:ଅ: ପର୍ଯ୍ୟନ୍ତ ଏହି ଯୁଦ୍ଧ ଚାଲିଲା । ଶେଷରେ ୧୯୧୮ ଖ୍ରୀ: ଅ: ରେ ସନ୍ଧି ହେଲା ।

ପାରିସଠାରେ ଶାନ୍ତିସଭା ବସିଲା । ଭବିଷ୍ୟତରେ କିପରି ଯୁଦ୍ଧ ନ ହେବ, ସେ କଥା ଠିକ୍ କରିବା ନିମନ୍ତେ ଏକ ଲିଗ୍ ଅବ୍ ନେଶନସ୍ (ଆନ୍ତର୍ଜାତୀୟ ମହାସଂଘ) ଗଠିତ ହେଲା । ଆପୋସରେ ପରସ୍ପର ବିବାଦ ମେଣ୍ଟାଇବା ଏହି ସଂଘର ଉଦ୍ଦେଶ୍ୟ ଅଟେ । କିନ୍ତୁ ଏହି ସଂଘ ପୂର୍ଣ୍ଣଭାବରେ ନିଜ କାର୍ଯ୍ୟ ସାଧନ କରି ପାରୁ ନାହିଁ ।

ମହାସମର ଫଳରେ ପୃଥିବୀରେ ଭୀଷଣ ପରିବର୍ତ୍ତନ ଘଟିଅଛି । ଜର୍ମାନି, ରୁଷ, ଅଷ୍ଟ୍ରିଆ ପ୍ରଭୃତି ରାଜ୍ୟର ପ୍ରବଳ ପରାକ୍ରାନ୍ତ ସମ୍ରାଟମାନେ ନିଜର ସିଂହାସନ ହରାଇ ବସିଛନ୍ତି । ଯୁଦ୍ଧବିଜ୍ଞାନର ଅଦ୍ଭୁତ ଉନ୍ନତି ସାଧିତ ହୋଇଅଛି । ଲୋକଶକ୍ତିର ମହାଜାଗରଣ ଆସିଅଛି । ଅଳ୍ପ କଥାରେ, ପୃଥିବୀର ଘଟନାଚକ୍ର ଏକ ନୂତନ ଦିଗରେ ଗତି କରିଅଛି ।

୧୯୨୦ ଖ୍ରୀ: ଅ: ରେ ଭାରତର ସ୍ୱାୟତ୍ତଶାସନର ମୂଳଭିତ୍ତି ସ୍ଥାପିତ ହୋଇଥିଲା ଏବଂ ଭାରତ କ୍ରମେ ସ୍ୱରାଜପ୍ରାପ୍ତି ପଥରେ ଅଗ୍ରସର ହେଉଅଛି ।

୧୯୩୫ ଖ୍ରୀ. ଅ: ରେ ପଞ୍ଚମ ଜର୍ଜଙ୍କ ରାଜତ୍ୱର ୨୫ ବର୍ଷ ପୂର୍ଣ୍ଣ ହେଲା । ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ତାଙ୍କର "ରୌପ୍ୟ ଜୁବୀଲି" ମହା ସମାରୋହରେ ପାଳିତ ହୋଇଥିଲା; କିନ୍ତୁ ୧୯୩୬ ଖ୍ରୀ: ଅ: ରେ ଜର୍ଜ ଇହଲୀଳା ସାଙ୍ଗ କଲେ ।

ଜର୍ଜଙ୍କ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ଅଷ୍ଟମ ଏଡ୍‌ୱାର୍ଡ଼ ରାଜା ହେବା କଥା, କିନ୍ତୁ ସେ ସିଂହାସନ ତ୍ୟାଗ କଲେ । ଫଳରେ

ଜର୍ଜଙ୍କ ଦ୍ୱିତୀୟ ପୁତ୍ର ଷଷ୍ଠ ଜର୍ଜ ବର୍ତ୍ତମାନ ଇଂଲଣ୍ଡର ରାଜା ହୋଇଅଛନ୍ତି ।

ଦିନେ ବ୍ରିଟେନରେ ଲୋକେ ଲଙ୍ଗଳା ହୋଇ ବୁଲୁଥିଲେ, ଗୁମ୍ଫାରେ ରହୁଥିଲେ, କଞ୍ଚାମାଂସ, ଫଳମୂଳ ଖାଇ ବଞ୍ଚୁଥିଲେ । ଆଜି ସେମାନେ ପୃଥିବୀ ମଧ୍ୟରେ ଗୋଟିଏ ବଳିଷ୍ଠ ଓ ଉନ୍ନତ ଜାତି । କେତେ ନୂଆ ନୂଆ ଆବିଷ୍କାର, ଶିଳ୍ପବିଜ୍ଞାନ ଓ ସାହିତ୍ୟର ଉନ୍ନତି ହୋଇଛି । ସେମାନେ ଆଜି ପକ୍ଷୀପରି ଆକାଶରେ ଉଡ଼ୁଛନ୍ତି । ଖ୍ରୀଷ୍ଟ ପୂର୍ବ ଶତାବ୍ଦୀମାନଙ୍କ ସଙ୍ଗେ ବିଂଶ ଶତାବ୍ଦୀକୁ ତୁଳନା କଲେ, ମନରେ କି ଭାବ ଜାତ ହୁଏ । ଏ ପୁଣି ସେମାନଙ୍କର ଶେଷ ନୁହେଁ । ପ୍ରତିଦିନ ନୂଆ ନୂଆ ତଥ୍ୟ ବାହାରୁଛି । ଲୋକ ମଙ୍ଗଳଗ୍ରହକୁ ଯିବାର କଳ୍ପନା କରୁଅଛି; ସାହାରାରେ ଘରଦ୍ୱାର, କୃଷି କରିବାର ଚେଷ୍ଟା କରୁଅଛି । ଏ ପୃଥିବୀ ତାହାକୁ ଗୋଟିଏ ଛୋଟ ଘେରପରି ଜଣାଗଲାଣି ।

ଆମ୍ଭମାନଙ୍କର ଇତିହାସକୁ ଐତିହାସିକ ପରି ପଢ଼ିବା ଉଚିତ । ଇତିହାସ କେଉଁଆଡ଼କୁ ଗତି କରୁଛି, ପୃଥିବୀ କେଉଁ ଦିଗରେ ଅଗ୍ରସର ହେଉଅଛି, ମାନବଜାତିର ଭବିଷ୍ୟତରେ କଣ ଅଛି, ଏସବୁ ଚିନ୍ତା କରି ନିର୍ଣ୍ଣୟ କରିବା ଦରକାର । ମନୁଷ୍ୟର ସମ୍ମୁଖରେ ଉଜ୍ଜ୍ୱଳ ଦିବାଲୋକ କେତେ ଦୂର ଅଛି, ତାହା କଳନା କରି ସ୍ଥିର କରିବା ଆବଶ୍ୟକ । ସେହି ଦିବାଲୋକରେ ଆମ୍ଭେମାନେ ଭଲ ସ୍ଥାନ ଖୋଜି ସେଠାରେ ଘର ତିଆରି କରିବା ଉଚିତ ।

ସ ମା ପ୍ତ

---

Printed by M. Kar, U. S. Press, Cuttack—20-1-39—1050